# ଯାହାର ମନ ଯେତେ

ଶ୍ରୀ ଜଗନ୍ନାଥ ମହାନ୍ତି






ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୨

# ଯାହାର ମନ ଯେଡେ

ଲେଖକ

**ଜଗନ୍ନାଥ ମହାନ୍ତି**

ତୃତୀୟ ସଂସ୍କରଣ

୧୯୮୬



—ପ୍ରକାଶକ—

ଶ୍ରୀ ଗୋବିନ୍ଦଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ ରୋଡ଼, କଟକ-୨

ମୂଲ୍ୟ—ଛଅ ଟଙ୍କା

# ସୂଚୀ






ଯାହାର ମନ ଯେତେ

ଲେଖକ : **ଜଗନ୍ନାଥ ମହାନ୍ତି**

ଭୁବନେଶ୍ୱର

ପ୍ରଥମ ସଂସ୍କରଣ—୧୯୬୮

ଦ୍ୱିତୀୟ ସଂସ୍କରଣ—୧୯୭୨

ତୃତୀୟ ସଂସ୍କରଣ—୧୯୮୭

ପ୍ରକାଶକ—

ଶ୍ରୀ ଗୋବିନ୍ଦଚରଣ ପାଣି

**ଓଡ଼ିଶା ବୁକ୍ ଷ୍ଟୋର**

କଟକ-୨

ମୂଲ୍ୟ—ସ୍ୱତଟଙ୍କା

ମୁଦ୍ରଣ :

**ପ୍ରିଣ୍ଟର୍ସ ନାରାୟଣୀ**

ସାହେବଜାଦା ବଜାର, କଟକ-୨

## ଖନା କାଳଙ୍କୁ ପାଠ ପଢ଼ାଇ ଯେ ଦୂରକଥା ପାଖରେ ଶୁଣାଇ ଥିଲେ

“ଟେଲିଫୋନ୍‌ର ମଜା
ଶହେ କୋଶରୁ ଆଣି ସାଥିରେ କଥା କହୁଛି ଅଜା ।”

“ମୋ ଛବି ବହି” ପଢ଼ିଲା ଦିନଠାରୁ ରବି ମନରେ କଥାଟା ଉବୁଟୁବୁ ହେଉଚି । ତା ବଡ଼ ଭାଇ ରାଉରକେଲାର ଲୁହା କାରଖାନାରେ କାମ କରୁଛନ୍ତି । ମାଆ କହୁଥିଲେ ସେ ଏଠାରୁ ଅଢ଼େଇ ଶହ କୋଶରୁ ବେଶୀ ଦୂର । ଏଠାରୁ ସେ ଯିବାବେଳେ ତାଙ୍କୁ ଗୋଟିଏ ଦିନ ଲାଗେ । କାହିଁ କେତେ ଦୂର ସତେ ! ଏଇ ତ ଆଠଦଶ ହାତ ଦୂରରୁ ଜଣଙ୍କ ସାଥିରେ କଥାବାର୍ତ୍ତା କରିବା ଅସମ୍ଭବ । ଆଉ ଶହ ଶହ କୋଶରୁ କିମିତି ତାଙ୍କ ସହିତ ଦୁଃଖସୁଖ କରିହେବ !



[ ରବି ଟେଲିଫୋନ୍‌ରେ କଥା କହୁଛି ]

ମନକଥା ମନରେ ଥାଏ । ଥରେ ରବି ବାପାଙ୍କ ସାଥିରେ ତାଙ୍କ ଗାଁ ପାଖ ବଡ଼ ଡାକଘରକୁ ଯାଉଥିଲା । ବାଟରେ ବାପା କହିଲେ, “ଆଜି ମୁଁ ବଡ଼ଭାଇଙ୍କୁ ଫୋନ୍

କରିବ । ତାର ବାହାଘର ହେବ । ସେ ଛୁଟି ନେଇ ଆସିବ ।" ରବି କହିଲା, "ବାପା, ମୁଁ ଟିକିଏ ଭାଇଙ୍କି କହିବି ସେ ମୋ ପାଇଁ ଗୋଟିଏ ଝରକଲମ ଆଣିବେ ।"

ବାପା କହିଲେ—ହଉ, ଚାଲେ ଦେଖିବା ।

ସେ ଯାଇ ଡାକଘର ହାକିମଙ୍କୁ ଏକଥା କହିଲେ । ପ୍ରଥମେ ଡାକଘର ବାବୁ କଥାବାର୍ତ୍ତା ହୋଇ ଫୋନ୍‌ଟା ବାପାଙ୍କୁ ବଢ଼ାଇ ଦେଲେ ।

କଳା ପ୍ଲାଷ୍ଟିକ୍‌ରେ ତିଆରି ଛୋଟ ଯନ୍ତ୍ରଟିଏ । ତାର ଗୋଟିଏ ପାଖକୁ କାନରେ ଲଗାଇ ଆଉ ଗୋଟିଏ ପାଖ ତୁଣ୍ଡ ଆଗରେ ଧରିଲେ ରବିର ବାପା କେତେ କ'ଣ କହି-ଗଲେ । ସତେ ଯେମିତି ସେ ଭାଇଙ୍କ ପାଖରେ ବସି ବା ଠିଆ ହୋଇ କଥା ହେଉଛନ୍ତି । କେତେ ସୁଖଦୁଃଖ, କେତେ ହସ ଖୁସି । ଏତେ ଦୂରରେ ରହି ଏତେ ପାଖରେ ଥିବା ପରି ସେମାନଙ୍କର କଥାବାର୍ତ୍ତା ଶୁଣି ରବି ଛାନିଆଁ । ମନରେ ତାର ଅସୁମାରି ଆନନ୍ଦ ଆଉ ବିସ୍ମୟ ।

ବହୁ ଦିନ ପରେ ରବି ଆଜି ତା ମନର କଥା ପାଇଛି । ଯାହା ତାହା ପକ୍ଷେ ସ୍ୱପ୍ନ ଥିଲା, କଳ୍ପନା ଥିଲା, ତାହା ସତ ଫଳିଚି । ବାପା ରବି ଆଡ଼କୁ ଟେଲିଫୋନ୍‌ଟିକୁ ବଢ଼ାଇ ଦେଇ କହିଲେ– ନେ'ରେ, ରବି ଭାଇଙ୍କ ସାଥିରେ ଟିକିଏ କଥା ହୋଇଯାଆ ।

ରବି ତରତର ହୋଇ ତାର ଟିକି ହାତରେ ଫୋନ୍‌କୁ ଧରିଲା । ସେ ଭାବିଲା ଯେମିତି ଆଜି ସେ ଗଡ଼ ଜିଣିଚି ।

ଭାଇ କ'ଣ କହୁଛନ୍ତି ଶୁଣିବା ପାଇଁ ରବି ଅତି ଆଗ୍ରହରେ ଫୋନ୍‌ଟିକୁ କାନ-ପାଖରେ ଲଗାଇ ଦେଲା । କିନ୍ତୁ ଫୋନ୍‌ର ଯେଉଁ ପାଖରେ କଥା କୁହାଯାଏ, ରବି ସେଇ ପଟ କାନରେ ଲଗାଇଲା । ଡାକଘରେ ଥିବା ଲୋକମାନେ ଫେଁ ଫେଁ ହୋଇ ହସି ଉଠିଲେ । ରବି ବଡ଼ ଲଜ୍ଜିତ ହେଲା । କିନ୍ତୁ ତାର ଭୁଲ କେଉଁଠି ଜାଣି ପାରିଲା ନାହିଁ ।

ବାପା ଫୋନ୍‌ଟିକୁ ଠିକ୍ କରି ଧରାଇ ଦେଲେ । ହେଲେ କାନ ପାଖରେ ଲଗାଇଲା ବେଳକୁ ଫୋନ୍‌ର ଆରପଟ ରବିର ପାଟିଠାରୁ ବହୁତ ଦୂରେଇ ଗଲା । ତେବେ ଦୁଇ ଭାଇ ଯାକ କଥାବାର୍ତ୍ତା ହେଲେ । ରବି ଗୋଟିଏ କଲମ ଆଣିବା ପାଇଁ ଭାଇଙ୍କୁ କହିବାକୁ ଭୁଲିଲା ନାହିଁ । କଥାବାର୍ତ୍ତା ସରିଲା । ବାପା ଡାକଘର ଫୋନ୍ ବ୍ୟବହାର କରିଥିବାରୁ ଡାକଘରେ ମହାସୁଲ ଦେଲେ ଆଉ ରବିକୁ ଆଣି ଘରକୁ ଫେରିଲେ ।

ରବିର ମନ କିନ୍ତୁ ଘର ଧରୁ ନ ଥାଏ । ସେ ଉଚ୍ଛନ୍ନ ହେଉଥାଏ କିପରି ବାପାଙ୍କ-ଠାରୁ ଫୋନ୍ ବିଷୟରେ ବୁଝିବ । କେଡ଼େ ଠିକ ଯନ୍ତ୍ରଟିଏ । ସେଥିରେ ପୁଣି କେତେ ଦୂରରୁ କଥା ଶୁଭୁଛି । କୁହୁକ କି କମିଆଁ ପରି ତାକୁ ଲାଗିଲା । ସେ ପଚାରିଲା ବାପା, ଏ ଭଳି ଯନ୍ତ୍ରଟି କିଏ କେମିତି ତିଆରି କଲେ ମୋତେ କହନ୍ତୁ ?

ବାପା କହିଲେ, "ରବି, ତୁମେ ପିଲାଏ ଟେଲିଫୋନକୁ ଆଗରୁ ଚିହ୍ନିଛ । ତୁମେ-ମାନେ କେତେ ଥର ଗୋଟିଏ ଖେଳ ଖେଳିଥାଅ । ଗୋଟିଏ ଲମ୍ବା, ସୂତାର ଦୁଇ ମୁଣ୍ଡରେ ଖାଲି ଦିଆସିଲି ଖୋଳ ଦିଟା ବାନ୍ଧି ଦିଆଯାଇ ଥାଏ । ଦୁଇଜଣ ପିଲା ଦୂରରେ ରହି ଏଥିରେ କଥାବାର୍ତ୍ତା ହୁଅନ୍ତି । ଜଣେ ପିଲା ଗୋଟିଏ ପଟ ଦିଆସିଲିକୁ କାନ ପାଖରେ ଧରିଲେ ଆଉ ଜଣେ ମୁହଁ ଆଗରେ ଧରି କଥା କହେ । ଆସ୍ତେ ଆସ୍ତେ କଥା କହିଲେ ସୁଦ୍ଧା ଅନ୍ୟକୁ ଶୁଣାଯାଏ । ଛୋଟ ଛୋଟ ପିଲାଙ୍କର ଖେଳରୁ ଆଲେକ୍‌ଜାଣ୍ଡର ଗ୍ରାହାମ୍ ବେଲ୍ ଏଇ ଟେଲିଫୋନ୍ ପ୍ରଥମେ ତିଆରି କରିଥିଲେ ।

ରବି ପଚାରିଲା ବାପା, ସେ କେଉଁ ଦେଶର ଲୋକ ଥିଲେ ?

ବାପା କହିଲେ -ବିଲାତର ସ୍କଟଲ୍ୟାଣ୍ଡ୍ ଦେଶରେ ଏଡ଼ିନବରା ବୋଲି ଗୋଟିଏ ସହର । ସେଠାରେ ଜଣେ ଅଧ୍ୟାପକଙ୍କ ଘରେ ଆଲେକ୍‌ଜାଣ୍ଡରଙ୍କ ଜନ୍ମ । ବାପା ମା ତାଙ୍କୁ ପିଲାଦିନେ ଆଲେକ୍ ବୋଲି ଡାକୁଥିଲେ ।

ରବି ପଚାରିଲା--ଆଚ୍ଛା, କିପରି ସେ ଏମିତି ଯନ୍ତ୍ରଟିଏ ଗଢ଼ି ପାରିଲେ ?

ବାପା କହିଲେ—ମନ କଲେ ସବୁ ହୋଇ ପାରିବ ରବି । ସବୁ କଥାକୁ ନଜର ଥିଲେ ବାଟ ଛାଏଁ ଛାଏଁ ଦିଶିବ । ଆଲେକ୍ ଯେତେବେଳେ ତୋ ଭଳି ପିଲା ଥିଲେ, ତାଙ୍କର ଦେହ ଭାରି ଖରାପ ହୋଇଥିଲା । ତେଣୁ ସେ ତାଙ୍କ ବାପ ମାଙ୍କ ସହିତ କାନେଡ଼ା ଦେଶକୁ ଚାଲିଯାଇଥିଲେ । ଆଲେକ୍ ଖଣା ଓ କାଲ ପିଲାମାନଙ୍କୁ ପଢ଼ାଇବାକୁ ଭାରିଭଲ ପାଉଥିଲେ । ତାଙ୍କ ବାପାଙ୍କଠାରୁ ମଧ୍ୟ ସେ ଏ ଦିଗରେ କିଛି ତାଲିମ ପାଇଥିଲେ । ଏ କାମରେ ଦକ୍ଷତା ବଢ଼ିବାରୁ କାନେଡ଼ାର ବୋଷ୍ଟନ ସହରରେ ସେ ପରେ ପରେ କାଲ ଓ ଖଣାମାନଙ୍କର ଗୋଟିଏ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହେଲେ ।

ରବି ପଚାରିଲା ବାପା, ଖନା ଆଉ କାଲିଙ୍କର ଶିକ୍ଷା ସହିତ ଟେଲିଫୋନ୍ ଯନ୍ତ୍ରର ସମ୍ପର୍କ କଣ ?

ବାପା କହିଲେ—କହୁଛି ଶୁଣ । ପିଲାଦିନୁ ଆଲେକଙ୍କର ସବୁକଥାରେ ଧାର ନଜର । ସେ ନିଜେ ଗୋଟିଏ କଥା କହିଲାବେଳେ କାଲି ପିଲାଟିଏ ତାଙ୍କ ଓଠ ଉପରେ ହାତରଖି କିପରି ଓଠ ବୁଲୁଛି ଜାଣୁଥିଲା । ମନେକର ମୁଁ ଜଣଙ୍କର ନାମ ଡାକୁଛି । ତୁମେ ମୋର ଓଠରେ ହାତରଖି ବୁଝିଲ । ଆଲେକ୍ ଏମିତି ଘଣ୍ଟା ଘଣ୍ଟା ଧରି ଦେଖୁଥିଲେ କିପରି ଗୋଟିଏ ଶବ୍ଦ ହେଉଛି ଆଉ କାଲିମାନେ କିପରି ବୁଝି ପାରୁଛନ୍ତି । ଏହା ଫଳରେ ସେ ଭଲ ଶୁଣିବାରେ ଦୋରସ୍ତ ହୋଇଗଲେ । ଏମିତି କି ସେ ତାଙ୍କର ପିଆନୋ ( ଏକ ବାଜା ) ବଜାଇବା ଶୁଣି ଶୁଣି ନିଜେ ପିଆନୋ ବଜାଇବା ଶିଖି ଯାଇଥିଲେ ।

ରବି ହସି ହସି କହିଲା—କେଡ଼େ ମଜା ସତେ ? ବଡ଼ କାବା କଥା ତ ।



[ ଆଲେକ୍ ଖନା ଓ କାଲି ପିଲାମାନଙ୍କୁ ପଢ଼ାଉଛନ୍ତି ]

ବାପା କହି ଚାଲିଲେ—ଯେଉଁଦିନ ଆଲେକଙ୍କୁ ଦଶବର୍ଷ ଚାଲିଲା, ବାପା ବୋଉ ତାଙ୍କର ଜନ୍ମଦିନ ପାଳିଥିଲେ । ସେତେବେଳେ ରେଡ଼ିଓ କି ଗ୍ରାମୋଫୋନ୍ ନଥିଲା । ସେ ସବୁ ସ୍ୱପ୍ନରେ ବି ସମ୍ଭବ ହୋଇ ନଥିଲା । ମନ ଖୁସି କରିବା ପାଇଁ ନିଜେ ଗୀତ ଗାଇବା ଓ ବାଜା ବଜେଇବା ଛଡ଼ା ଅନ୍ୟ ଉପାୟ ନଥିଲା । ଜନ୍ମଦିନ ଭୋଜିରେ ଯୋଗଦେବାକୁ ଯାଇଥିବା ସବୁ ପିଲାଏ ପିଆନୋରେ ପକାଇ କେତୋଟି ଭଲ ଗୀତ ଗାଇବାକୁ ଭାବିଲେ ହେଲେ କେହି ଜଣେ ହେଲେ ପାରିଲେ ନାହିଁ । କିନ୍ତୁ ଆଲେକ ଏହି ସବୁ ଗୀତ ତାଙ୍କ

ମାଆ ପିଆନୋରେ ତାଳ ପକାଇ ବୋଲୁଥିଲା ବେଳେ ତାଙ୍କ ହାତକୁ କେତେ ଦିନ ଧରି ଲକ୍ଷ୍ୟ କରିଥିଲେ । ସେ ତେଣୁ କହିଲେ, "ମୁଁ ପିଆନୋରେ ଏହି ଗୀତମାନ ବୋଲି ପାରିବ ।"

ଆଲେକ୍‌ର ଏ କଥା ଶୁଣି ଅନ୍ୟ ପିଲାମାନେ ଠୋ ଠୋ ହସିଲେ, କହିଲେ, "ମୂଳରୁ ପିଆନୋ ବଜାଇ ଜାଣିନାହିଁ । ପୁଣି ସେଥିରେ ସୁର ପକାଇ ଗୀତ ଗାଇବାକୁ ପିଲାର ସାହସ ଦେଖ ?"

ଆଲେକ୍ କେତୋଟି ଗୀତ ପିଆନୋ ବଜାଇ ଗାଇଲେ । ଏତେ ଭଲ ଭାବରେ ସେ ଗାଇଲେ ଯେ, ସେଠାରେ ଥିବା ସମସ୍ତେ ମନ୍ତ୍ରମୁଗଧ ହୋଇଗଲେ । ସମ୍ଭିର ମନରେ ଆନନ୍ଦ ଓ ଆଶ୍ଚର୍ଯ୍ୟ ଭାବ ଖେଳିଗଲା । ତାଙ୍କର ବାପା ମାଆ ମଧ୍ୟ ସେଠାକୁ ଧାଇଁ ଆସିଲେ ଏବଂ ପୁଅର ଗୀତ ଗାଇବା ଓ ବାଜା ବଜେଇବା ଶୁଣି ଭାରି ଖୁସି ହେଲେ ।

ରବି ପଚାରିଲା ବାପା, ଆଲେକ୍ ନିଶ୍ଚୟ ଜଣେ ଭଲ ଗାୟକ ଓ ବାଦ୍ୟକ ହୋଇଥିବେ ।

ବାପା ଉତ୍ତର ଦେଲେ—ସେ ଅନେକ ବାଜା ବଜାଇ ଜାଣିଥିଲେ ଆଉ ଅନେକ ଗୀତ ଗାଇ ଶିଖିଥିଲେ । ଏଥିରେ ତାଙ୍କର ଭାରି ଆଗ୍ରହ ଥିଲା । କିନ୍ତୁ ସେ ଜଣେ ଭଲ ଗାୟକ ହେବାକୁ ଇଚ୍ଛା କରି ନ ଥିଲେ । ପିଲାଟି ଦିନୁ ସେ ଏହାଠାରୁ ଆଉ ଅଧିକ ବଡ କାମ-ଗୁଡ଼ିକରେ ମୁଣ୍ଡ ଘୂରାଉଥିଲେ ।

ରବି ପଚାରିଲା—ସେ ସବୁ ବଡ଼ କାମ କ'ଣ ?

ବାପା କହିଲେ—କହୁଚି ଶୁଣ । ତୁମ ଜନ୍ମଦିନରେ ତୁମେ ଗୁରୁଜନମାନଙ୍କ ଠାରୁ ଉପହାର ପାଇଲା ପରି ଆଲେକ୍ ମଧ୍ୟ କେତେକ ଉପହାର ପାଇଥିଲେ । କିନ୍ତୁ ଆଜିକାଲି ପରି ପିଲାଙ୍କୁ ଦେବା ପାଇଁ ତ ଏତେ ସୁନ୍ଦର ଚକ ଚକଆ ଜିନିଷମାନ ଗଢ଼ା ହେଉ-ନଥିଲା । ତାଙ୍କର ଅଜାଙ୍କଠାରୁ ସେ ଗୋଟିଏ ଭଙ୍ଗା ଘଡ଼ି ଉପହାର ପାଇଥିଲେ । ଆଲେକ୍ କିନ୍ତୁ ତାକୁ ବଡ଼ ଆଦର କରୁଥିଲେ । ଯେତେବେଳେ ସମୟ ପାଉଥିଲେ, ତାକୁ ଫିଟାଇ ଯୋଡ଼ି ଆନନ୍ଦ ପାଉଥିଲେ । ଆଲେକ୍‌ଙ୍କ ବିଦ୍ୟାଳୟରେ ଗୋଟିଏ ବଡ଼ ଘଣ୍ଟା ଥିଲା ।

କିନ୍ତୁ ସେ ଜମା ବାଜୁ ନଥିଲା । ଆଲେକ୍ ଭାବିଲେ ଘଣ୍ଟାରେ କ'ଣ ଦୋଷ ରହିଯାଇଥିବାରୁ ବାଜୁ ନାହିଁ । ବିଚରା କେହି ତା କଥା ବୁଝୁ ନାହାନ୍ତି ।

ଥରେ ଆଲେକ୍ ଦେଖିଲେ, ଘଣ୍ଟାଥିବା କୋଠରୀରେ ଆଉ କେହି ନାହାନ୍ତି । ସେ ଏକୁଟିଆ । ତେଣୁ ସେ ଗୋଟିଏ ଚଉକି ଉପରେ ଚଢ଼ି ଚୁପ୍‌କାର ଘଣ୍ଟାଟିକୁ ଖୋଲିଲେ । ଘଣ୍ଟାଟିକୁ ସଜାଡ଼ିବାରେ ଲାଗିଗଲେ । କିଛି ସମୟ ପରେ ଘଣ୍ଟାଟା ଖୁବ୍ ଜୋରରେ "ଠନ୍" "ଠନ୍" କରି ବାଜି ଉଠିଲା । ଆଲେକ୍‌ଙ୍କ ମନରେ ଅସୁମାରି ଆନନ୍ଦ; କିନ୍ତୁ ଅନ୍ୟ କୋଠରୀରୁ ଶିକ୍ଷକ ଧାଇଁ ଆସିଲେ । ସେ ତାଙ୍କ ଉପରେ ରାଗିଯାଇ ନିଆଁବାଣ ହୋଇଗଲେ ଆଉ କହିଲେ, 'ଦେଖ ଆଉ ଥରେ ଘଣ୍ଟାରେ ଲାଗିଲେ ପିଠିରୁ ଚେପା ଛାଡ଼ିଯିବ ।'



[ ସ୍କୁଲ ଘଣ୍ଟା ମରାମତି କରିବାରେ ଆଲେକ୍ ଲାଗିପଡ଼ିଛନ୍ତି ]

ଆଲେକ ଏଥିରେ ବଡ଼ ଦୁଃଖିତ ହେଲେ । ଶିକ୍ଷକଙ୍କ କଥାରେ ମନ ତାଙ୍କର ଦବିଗଲା । କିନ୍ତୁ ଘଣ୍ଟା ମରାମତି ହୋଇଯିବାରୁ ପ୍ରତି ଘଣ୍ଟାରେ ଠନ୍ ଠନ୍ ଠନ୍ କରି ବାଜିବାରେ ଲାଗିଲା । ଶବ୍ଦ ବେଶୀ ହେବାରୁ ଶିକ୍ଷକ ପୁଣି ଘଣ୍ଟାକୁ ବନ୍ଦ କରିଦେଲେ । ଦିନେ ମାସକ ପରେ ଆଲେକ୍ ଦେଖିଲେ ଯେ, ବିଦ୍ୟାଳୟର ଏକ କୋଠରୀରୁ ଧୂଆଁ ବାହାରୁଛି । ସେତେବେଳେ ପାଟିକରି ଡାକିବା ବା ବିଦ୍ୟାଳୟ ଭିତରେ ଦଉଡ଼ିଯାଇ "ନିଆଁ ଲାଗିଗଲା" "ନିଆଁ ଲାଗିଗଲା" ବୋଲି ଚିତ୍କାର କରିବା ଆଲେକ୍‌ଙ୍କ ପକ୍ଷେ ସମ୍ଭବ

ନଥିଲା । ଆଲେକ୍‌ଙ୍କୁ ଗୋଟିଏ ବୁଦ୍ଧି ଦିଶିଲା । ସେ ହଠାତ୍ ଚଉକିଟିର ଉପରେ ଚଢ଼ି ଘଣ୍ଟା ଓ ମିନଟ୍ କଣ୍ଟାକୁ ବାର ପାଖରେ ରଖି ଦେଲେ । ଠନ୍·····ଠନ୍·····ଠନ୍ କରି ବାର ଥର ବାଜି ଉଠିଲା । ଶିକ୍ଷକ ରାଗି ସେଠାକୁ ଦଉଡ଼ି ଗଲେ କିନ୍ତୁ ପଦେ କଥା ନକହି ଆଲେକ୍ ଧୂଆଁ ଆଡ଼କୁ ହାତ ବଢ଼ାଇ ଦେଲେ । ଶିକ୍ଷକଙ୍କୁ କଥାଟା ବୁଝିବାକୁ ଆଉ ଡେରି ହେଲା ନାହିଁ । ସମସ୍ତେ ନିରାପଦରେ ଘରୁ ବାହାରି ଆସିଲେ । ଆଉ ସେ ଘରୁ ଆସବାବ ପତ୍ର ବାହାର କରି ଦେଲେ । ଏତେ ଲୋକଙ୍କ ଜୀବନ ଓ ଜିନିଷ ପତ୍ର ରକ୍ଷା ପାଇ ଯିବାରୁ ସମସ୍ତେ ଆଲେକ୍‌ଙ୍କୁ ଧନ୍ୟ ଧନ୍ୟ କଲେ । ଶିକ୍ଷକ ଆନନ୍ଦରେ ତାଙ୍କୁ କୁଣ୍ଢେଇ ପକେଇଲେ ।

ସେତେବେଳେ ଟେଲିଗ୍ରାଫର ବ୍ୟବହାର ହୋଇଥିଲା । କିନ୍ତୁ ଆଲେକ୍ ଦେଖିଲେ ଯେ, ତା ସାହାଯ୍ୟରେ ଆମେ କଥାବାର୍ତ୍ତା ହୋଇ ପାରୁନାହୁଁ । କେବଳ ଠାରରେ ଯାହା ସମ୍ବାଦ ପଠାଯାଇ ପାରୁଛି । ସେଥିପାଇଁ ସେ ନୂଆ ଯନ୍ତ୍ରଟିଏ ବାହାର କରିବାକୁ ମନ କଲେ । ପରେ ଆଲେକ୍ ନିୟୁୟର୍କରେ କାଲ ପିଲାମାନଙ୍କୁ ଶିକ୍ଷା ଦେଉଥିଲେ । ପ୍ରତି ସଞ୍ଜ ଆଉ ଛୁଟି ଦିନମାନଙ୍କରେ ସେ ତାରରେ ଶବ୍ଦ ଉଠାଇବା ଚେଷ୍ଟାରେ ଲାଗିଥାନ୍ତି । ଖନା କାଲ ପିଲା-ମାନଙ୍କୁ ପାଠ ପଢ଼ାଇଲା ବେଳେ ସେ ବୁଝିଥିଲେ ଯେ ମନୁଷ୍ୟର କାନ ଭିତରେ ଗୋଟିଏ ଧରୁ ପରଦା ରହିଛି । ସେଥିରେ ବାହାର ଶବ୍ଦ ଆଘାତ ପାଇଲେ ଶବ୍ଦ ଶୁଣାଯାଏ । ସେ ତେଣୁ କାନ ପରଦା ପରି ଦୁଇଟି ଲୁହାର ପତଲା ପାତ ତିଆରି କରି ସେଇ ପାତ ଦୁଇଟିକୁ ଗୋଟିଏ ତାରର ଦୁଇ ମୁଣ୍ଡରେ ଯୋଡ଼ିଦେଲେ । ଏହି ତାର ସାହାଯ୍ୟରେ ଆଉ ବିଜୁଳିବତୀ ବଳରେ ଶବ୍ଦ ପଠାଇବାକୁ ଚେଷ୍ଟାକଲେ ।

ଏଇ ସମୟରେ ଆଲେକ୍ ଓ୍ୱାଟସନ ନାମକ ଜଣେ ଭଲ ମିସ୍ତ୍ରୀଙ୍କ ସହିତ ପରିଚିତ ହେଲେ । ଓ୍ୱାଟସନ ଆଲେକଙ୍କ ଠାରୁ ନୂତନ ଯନ୍ତ୍ର ବିଷୟରେ ବହୁ କଥା ଶୁଣି ବଡ଼ ବିସ୍ମିତ ହେଲେ । ଆଲେକଙ୍କ କଥାଟାକୁ ପସନ୍ଦ କରି ସେ ଆଗ ନମୁନା ଗଢ଼ିବାରେ ଲାଗିଲେ । ଆଲେକ୍ ମଧ୍ୟ ତାଙ୍କ ସହିତ ମିଶିଲେ । ବର୍ଷ ବର୍ଷ ଧରି ଏଠାରେ ଉଦ୍ୟମ କଲେ । ଗୋଟିଏ ଗୋଟିଏ ବଡ଼ କଥା ନୂଆ କରି ଗଢ଼ିଲାବେଳେ କମ୍ ସମୟ ଆଉ ଶକ୍ତି ଦରକାର ହୁଏ ନାହିଁ । ଏଥିପାଇଁ ଏହାର ସ୍ରଷ୍ଟା ବହୁ କଷ୍ଟ, ଅପମାନ ଓ ନିନ୍ଦା ମଧ୍ୟ ସହ୍ୟ କରିଥାନ୍ତି ।

ଏହି ସମୟରେ ଆଲେକ୍ ମାବେଲ ବୋଲି ଗୋଟିଏ ଝିଅକୁ ବିବାହ କରିବାକୁ ମନ କଲେ । ମାବେଲ ମଧ୍ୟ ରାଜି ଥିଲେ । ଉଭୟେ ଉଭୟଙ୍କୁ ଖୁବ ଭଲ ପାଉଥିଲେ ଏବଂ ବିବାହ କରିବାକୁ ଠିକ୍ କରିଥିଲେ । କିନ୍ତୁ ମାବେଲଙ୍କର ବାପା ଏଥିରେ ରାଜି ହେଲେ ନାହିଁ । ଆଲେକ ଗୋଟିଏ ଫୁଙ୍ଗୁଲା ଓ ଲଫଙ୍ଗା ଯୁବକ । ସେ ନିଜର ସ୍ତ୍ରୀ ପିଲାମାନଙ୍କୁ ଚଳାଇ ପାରିବେ ନାହିଁ ବୋଲି ମାବେଲ ବାପାଙ୍କର ଧାରଣା ଥିଲା । ଶେଷରେ ସେ କହିଲେ ଯଦି ଆଲେକ୍ ତାଙ୍କର ଏସବୁ ନୂଆ ନୂଆ କାମ କରିବାର ପାଗଲାମି ଛାଡ଼ିବେ, ତେବେ ସେ ନିଶ୍ଚୟ ତାଙ୍କ ଝିଅକୁ ବିବାହ ଦେବେ । କିନ୍ତୁ ଆଲେକ୍ ତାହା ଛାଡ଼ି ପାରିବେ ନାହିଁ ମାତ୍ର ମାବେଲ ଆଲେକ୍‌ଙ୍କ ଉପରେ ପୂରା ଆସ୍ଥା ରଖିଛନ୍ତି । ସେ ଆଉ କାହାକୁ ବିବାହ ନ କରି ଅପେକ୍ଷା କଲେ ।

ଦିନେ ଆଲେକ୍ ଓ ୱାଟସନ ଗୋଟିଏ ଟେଲିଫୋନ୍‌ର ନମୁନା ତିଆରି କଲେ । ସେ ଦିନ ୧୮୭୬ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ୧୦ ତାରିଖ । ପ୍ରାୟ ୧୧୫ ବର୍ଷ ତଳର କଥା ନୂଆ ଯନ୍ତ୍ରଟି ସାହାଯ୍ୟରେ ପ୍ରଥମେ କଥାବାର୍ତ୍ତା କରିବାକୁ ଦୁହେଁ ପ୍ରସ୍ତୁତ ହେଲେ । ଆଲେକ୍ ଘରର ମହଲା ଉପର ଏକ କୋଠରୀରେ ରହିଲେ । ଜଣଙ୍କ ପାଖରେ ତାରର ଗୋଟିଏ ମୁଣ୍ଡ ଓ ଅନ୍ୟ ଜଣକ ପାଖରେ ସେଇ ତାରର ଅନ୍ୟ ମୁଣ୍ଡ ରହିଲା । ଆଲେକ୍ ତାରର ମୁଣ୍ଡ ପାଖରେ ମୁହଁ ରଖି କହିଲେ "ୱାଟସନ, ଉପରକୁ ଆସ । ମୁଁ



[ ଆଲେକ୍ ଓ ୱାଟସନ ଫୋନ୍ କରିବାରେ ଲାଗିଛନ୍ତି ]

ତୁମଙ୍କୁ ଲୋଡ଼ୁଛି ।" ୱାଟସନ ଆଲେକ୍‌ଙ୍କର ପ୍ରକୃତ ସ୍ୱର ଜାଣିପାରି ଆନନ୍ଦରେ ଗଦ୍ ଗଦ୍ ହୋଇ ପଡ଼ିଲେ । ସେ ଦୌଡ଼ି ଦୌଡ଼ି ଆସି ଉପର ମହଲାରେ ପହଞ୍ଚିଲେ ।

ହସି ହସି ଆଲେକ୍‌ଙ୍କୁ ଖୁବ୍ ଜୋରରେ କହିଲେ, "ଆମେ ପାଇଛୁ । ମୁଁ ଆପଣଙ୍କର ସବୁ କଥା ସଫା ଶୁଣି ପାରିଛି ।" ଦୁହେଁ ଦୁହିଁଙ୍କୁ ଆନନ୍ଦରେ କୁଣ୍ଢେଇ ପକାଇଲେ । ସେମାନଙ୍କର ବହୁ ଦିନର ଶ୍ରମ ସଫଳ ହେଲା । ଜଣଙ୍କର ମୁଣ୍ଡ ଆଉ ଜଣଙ୍କର ହାତ ବଳରେ ଟେଲିଫୋନ୍ ଜନ୍ମ ହେଲା । ତାହା ହେଲା ଦୁନିଆକୁ ସେମାନଙ୍କର ଅମୂଲ୍ୟ ଉପହାର ।

କିନ୍ତୁ ସେତେବେଳେ ସମସ୍ତେ ତାକୁ ଗୋଟିଏ ଖେଳନା ବୋଲି ଭାବିଲେ । ତା'ର ଗୁରୁତ୍ୱ କେହି ବୁଝିଲେ ନାହିଁ । ଆଲେକ୍ ଓ ଓ୍ୱାଟସନ କ'ଣ କରିବେ ଭାବି ପାରିଲେ ନାହିଁ । କେତେକ ଦିନ ପରେ ଏକ ସହରରେ ଗୋଟିଏ ବଡ଼ ମେଳା ବସିଲା । ଆଲେକ୍ ତାଙ୍କର ଟେଲିଫୋନ୍ ଯନ୍ତ୍ରଟିକୁ ନେଇ ସେଠାରେ ହେଉଥିବା ଗୋଟିଏ ପ୍ରଦର୍ଶନୀରେ ରଖିଲେ । କେହି ତାକୁ ଆଡ଼ଆଖିରେ ସୁଦ୍ଧା ଚାହିଁଲେ ନାହିଁ । ତେଣୁ ତାକୁ ଧରି ଘରକୁ ଫେରି ଆସିବାକୁ ବାହାରିଛନ୍ତି, ଜଣେ ସୁସ୍ଥ ଓ ସୁନ୍ଦର ଲୋକ ପ୍ରଦର୍ଶନୀ ଭିତରକୁ ପଶି ଆସୁଥିବାର ଦେଖିଲେ ।

ଆଲେକ୍ ଭାରି ଖୁସି ହୋଇଗଲେ । ପାଖରେ ଥିବା ଜଣେ ସହକର୍ମୀଙ୍କୁ ସେ ଆନନ୍ଦରେ କହିଲେ, "ଏଇ ବ୍ରାଜିଲ୍ ଦେଶର ରାଜା ଆସୁଛନ୍ତି । ସେ ମୋତେ ଚିହ୍ନି-ପାରିବେ କି ନାହିଁ କେଜାଣି । କିନ୍ତୁ ମୁଁ ମୂକ-ବଧିର ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିଲାବେଳେ ସେ ସେହି ବିଦ୍ୟାଳୟକୁ ଦେଖିବା ପାଇଁ ଆସିଥିଲେ । ସେଇଠାରେ ମୁଁ ତାଙ୍କ ସହିତ ପରିଚିତ ହୋଇଥିଲି ଆଉ ସେ ମୋ କାମରେ ଭାରି ଆଗ୍ରହ ପ୍ରକାଶ କରିଥିଲେ ।"

ବ୍ରାଜିଲ୍ ଦେଶ ରାଜାଙ୍କର ଆଖି ହଠାତ୍ ଆଲେକ୍‌ଙ୍କ ଉପରେ ପଡ଼ିଗଲା । ସେ ତାଙ୍କ ସହିତ ହାତ ମିଳାଇବାକୁ ଆନନ୍ଦରେ ଅଧୀର ହୋଇ ବିରାଟ ପ୍ରଦର୍ଶନୀ ଭିତରେ ଚାଲି ଆସିଲେ । ସେ ଆଲେକ୍‌ଙ୍କୁ ପଚାରିଲେ, "ଏଇଟା କି ଯନ୍ତ୍ର ?" ଆଲେକ୍‌ଙ୍କର ଶୁଭ ସମୟ ଆସି ପହଞ୍ଚିଲା । ସେ ରାଜାଙ୍କୁ ଯନ୍ତ୍ରର ଗୁରୁତ୍ୱ ବୁଝାଇ ଦେଲେ । ସେ ଯନ୍ତ୍ରର ଶୁଣିବା ଅଂଶଟିକୁ ରାଜାଙ୍କ କାନ ପାଖରେ ଧରିଲେ । ଆଲେକ୍‌ଙ୍କର ଜଣେ ସହକର୍ମୀ ଅନ୍ୟ ମୁଣ୍ଡରୁ କଥା କହିଲେ । ରାଜା ଅତିଶୟ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହୋଇ କହିଲେ "ଏଥିରେ ତ କଥା ବେଶ୍ ଶୁଣାଯାଉଛି ।"

ରାଜାଙ୍କ କଥା ଶୁଣି ଅନ୍ୟ ବଡ଼ ବଡ଼ ଲୋକେ ଓ ବୈଜ୍ଞାନିକମାନେ ଏଇ ଯନ୍ତ୍ରକୁ ପରୀକ୍ଷା କରି ଖୁସିହେଲେ । ସେହି ପ୍ରଦର୍ଶନୀରେ ଆଲେକ୍‌ଙ୍କ ଟେଲିଫୋନ୍ ସବୁଠୁ ଭଲ ପଦାର୍ଥ ବୋ'ଲି ଜଣାଗଲା । ସବୁଠାରୁ ଭଲ ଉଦ୍ଭାବନ ହୋଇଥିବା ଯୋଗୁଁ ଆଲେକ୍‌ଙ୍କୁ ପୁରସ୍କାର ମିଳିଲା । ତାପରେ ଲୋକମାନେ ଟେଲିଫୋନ୍‌ରେ ବିଶ୍ୱାସ କଲେ ଆଉ ତାର ଉପକାର ବୁଝିଲେ । ମାବେଲଙ୍କ ବାପା ଏଥିରୁ ବାଦ ଗଲେନାହିଁ । ସେ ମଧ୍ୟ ଆଲେକ୍‌ଙ୍କର ମହିମା ବୁଝି ତାଙ୍କ ଝିଅ ମାବେଲଙ୍କୁ ତାଙ୍କ ସହିତ ବିବାହ କରିଦେଲେ ।

କ୍ରମେ ଟେଲିଫୋନ୍‌ର ଲୋକପ୍ରିୟତା ବଢ଼ିଗଲା । ଦେଶର ନାନାସ୍ଥାନରେ ଟେଲିଫୋନ୍ ଯନ୍ତ୍ର ବସିଲା । ଆଲେକ୍‌ଜାଣ୍ଡର ବେଲ୍ ଗ୍ରାହାମ୍ଙ୍କ ଜଣାଶୁଣା ହୋଇଗଲେ । ଏଥିରୁ ସେ ଅସୁମାରି ଧନ ମଧ୍ୟ ରୋଜଗାର କଲେ । ଆଲେକ୍‌ଙ୍କ ତିଆରି ଟେଲିଫୋନ୍‌ରେ ଗୋଟିଏ ମାତ୍ର ଦୋଷ ଥିଲା । ଏହା ସାହାଯ୍ୟରେ ବେଶ ଦୂରରେ ଥିବା ଲୋକଙ୍କ ସହିତ କଥାବାର୍ତ୍ତା କରି ହେଉ ନ ଥିଲା । ପରେ ବୈଜ୍ଞାନିକମାନେ ଏହାକୁ ଉନ୍ନତ କରିଥିଲେ । ତେଣୁ ଏଥିରେ ବହୁଦୂରଯାଏ କଥାବାର୍ତ୍ତା କରିବା ସମ୍ଭବ ହେଲା । ପୃଥିବୀର ପ୍ରସିଦ୍ଧ ବୈଜ୍ଞାନିକ ଟମାସ ଏଡ଼ିସନ୍ ଏହି ଟେଲିଫୋନ୍ ଯନ୍ତ୍ରଟିରେ ବହୁ ଉନ୍ନତି କରିପାରିଥିଲେ । ଏହା ଫଳରେ ଆଜିକାଲି ଟେଲିଫୋନ୍ ଏତେ ଲୋକପ୍ରିୟ ହୋଇପାରିଛି ।

ରବି ପଚାରିଲା—ବାପା, ଟେଲିଫୋନ୍‌ରେ ଆଉ କି କାମ ସହଜରେ ହୋଇ-ପାରୁଛି ?

ବାପା କହିଲେ—ଆଜିକାଲି ଆମ୍ଭେମାନେ ଯେ କେବଳ ଆମର ଦୂରବର୍ତ୍ତୀ ଲୋକମାନଙ୍କ ସହିତ ଅତି କମ୍ ସମୟରେ ଆଉ ସୁବିଧାରେ କଥାବାର୍ତ୍ତା କରିପାରୁଛୁ ଖାଲି ସେତିକି ନୁହେଁ, ଏଇ କ୍ଷୁଦ୍ର ଯନ୍ତ୍ରଟି ଦ୍ୱାରା ମନୁଷ୍ୟର ଅନେକ ଉପକାର ହୋଇ ପାରୁଛି । ପ୍ରଥମେ ସିନା କେବଳ ବଡ଼ ବଡ଼ ସହରରେ ଟେଲିଫୋନ୍ ବସିଥିଲା, ଏବେ ଅଧିକାଂଶ ସହର ମଫସଲ ଏମିତିକି ଗୋଟିଏ ଦେଶରୁ ଅନ୍ୟ ଦେଶରେ ରହୁଥିବା ଲୋକଙ୍କ ସହିତ ଟେଲିଫୋନ୍‌ରେ କଥାବାର୍ତ୍ତା କରି ହେଉଅଛୁ । ତୁମେ ଦେଖିଥିବ ସହରମାନଙ୍କରେ ରାସ୍ତାକଡ଼ରେ ଓ ରେଲରାସ୍ତା ପାଖରେ ଟେଲିଫୋନ୍ ତାରମାନ ବକୁଳ ତାର ପରି ଖୁଣ୍ଟମାନଙ୍କରେ ଲମ୍ବି ରହିଥାଏ । ଆଜିର ବାଣିଜ୍ୟ ବ୍ୟବସାୟରେ ଟେଲିଫୋନ୍‌ର ବିଶେଷ ବ୍ୟବହାର ହୋଇଥାଏ । ବ୍ୟବସାୟୀମାନେ

ଜିନଷପତ୍ରର ବକ୍ରି ଖର୍ଦ୍ଦି, ଦରଦାମ ବୁଝାବୁଝି କରିବା ପାଇଁ ଟେଲିଫୋନ୍ ବ୍ୟବହାର କରିଥାନ୍ତି ।

ଘରେ ରୋଗୀ ବିଛଣାରୁ ଉଠିପାରୁନାହିଁ । ଡାକ୍ତରଙ୍କ ପାଖକୁ ଏଥିରେ ଖବର ଦିଆଗଲେ ସେ ଅତିଶୀଘ୍ର ଔଷଧପତ୍ର ସହିତ ପହଞ୍ଚି ଯାଉଛନ୍ତି । ଆଜିକାଲି ଶାସନ କାର୍ଯ୍ୟରେ ଟେଲିଫୋନ୍‌ର ଆବଶ୍ୟକତା ଅସୁମାରି । ରାଜ୍ୟରେ ଶାନ୍ତିଶୃଙ୍ଖଳା ରକ୍ଷା, ଚୋର ଡକାୟତଙ୍କୁ ଧରିବା, ପୋଲିସ୍ ଥାନାକୁ ଖବର ପଠାଇବା, ଯୁଦ୍ଧ ଆଦି କାର୍ଯ୍ୟରେ ଟେଲି-ଫୋନ୍ ବିଶେଷ ସାହାଯ୍ୟ କରିଥାଏ । ଖବର କାଗଜର ସମ୍ପାଦକମାନେ ଟେଲିଫୋନ୍ ଯୋଗେ ଅତି କମ୍ ସମୟ ମଧ୍ୟରେ ଦେଶର ଖବର ପାଇପାରୁଛନ୍ତି । ଟେଲିଫୋନ୍ ଆଜି ଏଇପରି ଏତେ କାମରେ ଆମର ଦରକାର ହେଉଛି ଯେ, ତାକୁ ଛାଡ଼ି ଏ ଯୁଗରେ ଚଳିବା କାଠିକର ପାଠ । ଏଥିପାଇଁ ଆଲେକ୍‌ଜାଣ୍ଡର ବେଲ୍‌ଙ୍କୁ ମନୁଷ୍ୟ ଜମା ଭୁଲିପାରିବ ନାହିଁ ।

ରବି କହିଲା—ଯାହାହେଉ ବାପା, ଆଜି ଆପଣଙ୍କଠାରୁ ମୁଁ ଟେଲିଫୋନ୍ ବିଷୟରେ ବହୁକଥା ଜାଣିପାରିଲି । ମୁଁ ସେମିତି ନୂଆ ନୂଆ କଥାମାନ ବାହାର କରନ୍ତିକି ?

ବାପା କହିଲେ—ରବି ତୁ ମନେକଲେ ସବୁ କରିପାରିବୁ । ପିଲାଦିନୁ ନୂଆନୂଆ କଥାମାନ ଜାଣି ଭଲ ଭଲ କାମ କଲେ ତୁ ନିଶ୍ଚୟ ବଡ଼ ମଣିଷ ହୋଇପାରିବୁ । ସମସ୍ତେ ଧନ୍ୟ ଧନ୍ୟ କରିବେ । ଓଳିଆରୁ କେହି ରଜା ହୋଇନାହାନ୍ତି । ଯତ୍ନ କଲେ ପଥ୍ରୁ ରତ୍ନ ମିଳେ ।

—*—

# ବିଦ୍ୟାଳୟର ବୋକାଚିଲା, ବିଜ୍ଞାନର ବିଖ୍ୟାତ ଯାଦୁକର

ଆଷାଢ଼ ମାସ । ଆକାଶରେ କଳା ମେଘ ଘୋଟିଯାଇଛି । ଅନବରତ ଗୁଡ଼ୁଁ ଗୁଡ଼ୁଁ ବିଜୁଳି ମାରିଦେଉଛି । ସତେ ଯେମିତି ଆକାଶର କଳା ପରଦା ଚିରିଯାଇ ତା ଭିତରୁ ଇନ୍ଦ୍ରପୁରୀର ଉଜ୍ଜ୍ୱଳ ଆଲୁଅ ଫୁଟି ଦିଶୁଛି । ସାଇଁ ସାଇଁ ପବନ ବହୁଛି । ଟୋପା ଟୋପା ହୋଇ ବର୍ଷା ପାଣି ମାଟି ମାଆ ଉପରେ ଝରି ପଡ଼ୁଛି ।

ଆକାଶରେ ବାରମ୍ବାର ବିଜୁଳି ମାରୁଥିବାରୁ ମାଟି ମାଆର ମୁହଁ ଅନ୍ଧାର ହୋଇ ଯାଇଛି । ବିଜୁଳିବତୀମାନ ଲିଭିଯାଇଛି । ଆଲୁଅ ଅଭାବରୁ ସହର ସାରା ଅନ୍ଧାର । ରାସ୍ତାରେ ଚାଲିବା କଷ୍ଟକର । ମୁହଁକୁ ମୁହଁ ଦିଶୁନାହିଁ । ଘର ଭିତରେ ହଠାତ୍ ଆଲୁଅ ଲିଭିଯିବାରୁ ମହମବତୀଟେ ଲଗାଇ ହେଲା ନାହିଁ । ସବୁଆଡ଼େ କଳା କଟି କଟି ଅନ୍ଧାର ।

ରବିର ବଡ଼ଭାଇ ରାଉରକେଲାରୁ ଘରକୁ ଆସିଛନ୍ତି । ଅନ୍ଧାର ଘରେ ସମସ୍ତେ ତାଙ୍କ ପାଖରେ ବସି କଥାବାର୍ତ୍ତା ହେଉଛନ୍ତି । ସେ କହିଲେ, "ରବି, ଆଜି ଏମିତି ପାଗ ଖରାପ ଯୋଗୁଁ ବିଜୁଳି ଗୋଳମାଳ ହୋଇଛି, ବିଜୁଳିବତୀମାନ ଲିଭି ଚାରିଆଡ଼ ଅନ୍ଧାର । ଏଥିପାଇଁ ଆମେ କେତେ ହଇରାଣ ହେଉଛୁ । ଖାଲି ଯେ ଆଲୁଅ ଲିଭିଗଲା, ସେତିକି ନୁହେଁ, ବିଜୁଳି ଶକ୍ତିରେ ଚାଲୁଥିବା ସବୁ କଳ କାରଖାନା, ପଙ୍ଖା, ରେଡ଼ିଓ ଆଦି ଏଥିଯୋଗୁଁ ପୂରା ଅଚଳ ହୋଇଯାଇଛି । ତା ଫଳରେ ଲୋକେ କମ୍ ଅସୁବିଧା ଭୋଗ କରୁ ନାହାନ୍ତି ! ଟିକିଏ ବିଜୁଳି ବନ୍ଦ ହେଲେ ସାରା ଦୁନିଆ ବାଉଳା । ହେଲେ ତୁ ଜାଣିଚୁ କେତେବେଳେ ଗୋଟିଏ ସାରା ଦେଶରେ ଜାଣି ଜାଣି ବିଜୁଳି ଆଲୁଅ ବନ୍ଦ କରି ଦିଆଯାଇଥିଲା ?"

ରବି ପିଲାଟାଏ ସିନା, ତାର ସବୁ କଥାକୁ ନଜର । ସେ କହିଲା—ଚୀନ୍ ଆଉ ପାକିସ୍ଥାନ ଆମ ଦେଶକୁ ଆକ୍ରମଣ କଲାବେଳେ ପରା ଏମିତି ରାସ୍ତାକଡ଼ର ବିଜୁଳିବତୀ-ମାନ ଲିଭାଇ ଦିଆ ଯାଉଥିଲା । ଗାଡ଼ି, ମଟରରେ ଜୋର ଆଲୁଅ ଲଗାଇବାକୁ ମନା କରା ଯାଇଥିଲା । କ'ଣ ଶତ୍ରୁପକ୍ଷର ବୋମା ଆକ୍ରମଣରୁ ଆମର ବଡ଼ ବଡ଼ ସହରକୁ ରକ୍ଷା କରିବା ପାଇଁ ଏମିତି ଅନ୍ଧାର କରାଯାଉଥିଲା ?

ରବିର ବଡ଼ଭାଇ କହିଲେ—ବାଃ, ସୁନାଭାଇଟି ମୋର । ଭଲ କରି କଥାଟା ଜାଣିଚି । ତେବେ ଆମେ ମନ ଖୁସିରେ ଏମିତି ଅନ୍ଧାର କେବେ କରୁନାହିଁ । ଆଜିପରି

କେତେବେଳେ ପାଣିପାଗ ଖରାପ ହେଲେ ବିଜୁଳିର ଗୋଳମାଳ ହେଉଚି ତ କେତେ-ବେଳେ ଯୁଦ୍ଧ ଲାଗିଲେ ବାଧ୍ୟରେ ଆଲୁଅ ଲିଭାଇ ରଖା ଯାଉଚି । କିନ୍ତୁ ଯୁକ୍ତରାଷ୍ଟ୍ର ଆମେରିକାରେ ଦିନେ ଗୋଟିଏ ଘଣ୍ଟାପାଇଁ ସାରାଦେଶର ଲୋକ ବିଜୁଳିବତୀ ଲିଭାଇ ଦେଇଥିଲେ ।

ରବି ବଡ଼ ଆଗ୍ରହୀ ହୋଇ ପଚାରିଲା - କାହିଁକି ? କେଉଁ ଦିନ ?

ରବିର ଭାଇ କହିଲେ – ବିଜୁଳି ବତୀର ପ୍ରଥମ ସ୍ରଷ୍ଟା ହେଉଛନ୍ତି ଟମାସ ଏଡ଼ିସନ୍ । ଯେଉଁ ଦିନ ସେ ମୃତ୍ୟୁମୁଖରେ ପଡ଼ିଲେ ତାଙ୍କୁ ଶ୍ରେଷ୍ଠ ସମ୍ମାନ ଦେବା ଉଦ୍ଦେଶ୍ୟରେ ଯୁକ୍ତରାଷ୍ଟ୍ରର **ରାଷ୍ଟ୍ରପତି ହର୍ବର୍ଟ ହୁଭର୍** ସାହେବ ସମସ୍ତ ଜାତିକୁ ଘଣ୍ଟାକ ପାଇଁ ଆଲୁଅ ଲିଭାଇ ରଖିବାକୁ କହିଥିଲେ ।

ରବି ପଚାରିଲା—ଭାଇ, ଏଡ଼ିସନଙ୍କ କଥା ମୋତେ ଟିକିଏ କହନ୍ତୁ ?

ରବିର ଭାଇ କହିଲେ—ତୁଳସୀ ଦୁଇ ପତ୍ରରୁ ବାସେ । ପିଲାଦିନୁ ଏଡ଼ିସନ ନାନା କଥାରେ ବଡ଼ ଆଗ୍ରହ ଆଉ କୌତୂହଳ ଦେଖାଉଥିଲେ । ଲୋକଙ୍କର ମଙ୍ଗଳ ଯେମିତି ହେବ, ଯେଉଁଥିରେ ଅସୁବିଧା ହେଉଚି ତାକୁ କିମିତି ସୁବିଧା କରିହେବ, ସବୁରି ସୁଖ ଶାନ୍ତି କିପରି ବଢିବ, ଏ ଦିଗରେ ସେ ପିଲାଦିନୁ ମନ ଦେଇଥିଲେ । ପିଲାଦିନର କେତୋଟି ଘଟଣାରୁ ତୁ ଏହା ଜାଣି ପାରିବୁ ।

ଏଡ଼ିସନ ତ ଆମେରିକାର ମିଲାନ୍ ନାମକ ଏକ ଛୋଟ ସହରରେ ଜନ୍ମ ହୋଇ-ଥିଲେ । ପିଲାଦିନେ ତାଙ୍କୁ ଟମି ବୋଲି ସମସ୍ତେ ଡାକୁଥିଲେ । ଥରେ ତାଙ୍କୁ ଚାରିପାଞ୍ଚ ବର୍ଷ ହୋଇଥିଲା । ଶୀତଦିନ ହାଡ଼ଭଙ୍ଗା ଜାଡ଼ ପଡ଼ିଚି । ଖଳା ବାଡ଼ିରେ ଚଢ଼େଇ ବସା ବାନ୍ଧିଛନ୍ତି । ବସାରେ ବି କେତୋଟି ଡିମ୍ବ । ଟମି କାହିଁ, ଟମି କାହିଁ ଚାରିଆଡ଼େ ଖୋଜା ପଡ଼ିଚି । ବାପା ମା' ଦେଖିଲା ବେଳକୁ ଟମି ଯାଇ ଖଳାବାଡ଼ିରେ । ସେ ଚଢ଼େଇ ବସାଟାକୁ କୋ'ଳେଇ ବସି ରହିଛି । ଥଣ୍ଡାରେ ତା ମୁହଁଟା ନେଳିଆ ପଡ଼ି ଯାଇଚି । ଗୋ଼ଡ଼ ହାତ କୋଲ ମାରି ଯାଇଚି । ଦେହ ସାରା ବରଡ଼ା ପତ୍ର ପରି ଥରୁଛି ।

ମାଆ ତାଙ୍କ ହାତ ଧରି ବସା ଉପରୁ ଝିଙ୍କି ଆଣିଲେ । ଟମି ବଡ଼ ବ୍ୟସ୍ତ ହୋଇପଡ଼ିଲେ । ତାଙ୍କ ଛାତି ଭିତରେ ସତେ ଯେମିତି ଦୁହିଁ ହୋଇଗଲା । ତାଙ୍କୁ ଆସିବାରେ ଏକବାରେ ଅମଙ୍ଗ ହେବା ଦେଖି ମାଆ ପଚାରିଲେ, "ହଇରେ ଟମି, ତୁ କାହିଁକି ଭଲା ଏତେ ଶୀତରେ ଆସି ବସାଟା ଉପରେ ବସିଥିଲୁ ।"

ଟମି ଥମ୍ ଥମ୍ ହୋଇ କହିଲେ—ମାଆ ମୁଁ ଜାଣିବାକୁ ଚାହୁଁଥିଲି, ମୁଁ ଅଣ୍ଡା ଉଷୁମ କଲେ ଛୁଆ ଫୁଟିବ କି ନାହିଁ ?

ରବର ପେଠି ଆସୁଡ଼େଇ ଭାଇ କହିଲେ—ଜାଣିଲୁ ରବି, ଏଇ ଜାଣିବା ପାଇଁ ଇଚ୍ଛା। ସବୁକଥାକୁ ଭଲ କରି ବୁଝିବା ପାଇଁ ମନ ଟମିଙ୍କର ପିଲାଦିନୁ ଥିଲା। ଏହାଥି ଯୋଗୁଁ ସେ ଜଣେ ବଡ଼ ମଣିଷ ହୋଇପାରିଥିଲେ। ସେତେବେଳେ ଯଦିଓ ଟମିଙ୍କର ଘରର ଆସବାବ-ପତ୍ର ଓ ସାଜସଜ୍ଜା ଖୁବ୍ ଭଲ ଥିଲା ବୋଲି ସମସ୍ତେ ପ୍ରଶଂସା କରୁଥିଲେ। ଆଜି କାଲିର ପିଲାଏ ତାକୁ ହୁଏ ମରହଟ୍ଟୀ ଓ ପୁରୁଣାକାଳିଆ ବୋଲି କହି ନାକ ଟେକିବେ। କିରୋସିନ ବତୀର ଆଲୁଅ ଧାଡ଼ି ଧାଡ଼ି ହୋଇ ଜଳୁଥିଲା। ଟମି ବତୀଗୁଡ଼ିକ ଏତେ ଜୋରରେ ତେଜି ଦେଇଥିଲେ ଯେ ଘର ଗୋଟାକ ଆଲୁଅ ହୋଇ ଯାଇଥିଲା ଆଉ କିରୋସିନୀ ଜଳି ଉଠୁଥିଲା। ମାଆ କହୁଥିଲେ--ଟମି, ବତୀଗୁଡ଼ାକ କିପରି ଜଳୁଚି ମଜା ଦେଖିବାକୁ ଏତେ ଜୋରରେ ତେଜି ଦେଉଚୁ। କିନ୍ତୁ ହୁସିଆର ! କେତେବେଳେ ଘର ସହିତ ଆମ ସଭିଙ୍କୁ ତୁ ନିଆଁରେ ପୋଡ଼ିଦେବୁ ମୁଁ ଦେଖୁଚି।



[ ଟମିଙ୍କର ଯବୁଥିରେ ଘର ନଜର ]

ସେଇପରି କୋଇଲା ଆଞ୍ଚ ଚୁଲିରେ ଟମି ଘରର ରୋଷେଇବାସ ହେଉଥିଲା। ଥରେ ରୋଷେଇ ବସିଚି। ଆଞ୍ଚ ସରିଆସିଲାଣି। ମାଆ ଗୋଟିଏ ଛୋଟ କୋଦାଳରେ କୋଇଲା ପୁଳାଏ ଆଣି ଚୁଲିରେ ଦେଲେ। ଏଣେ ଟମି ମାଆଙ୍କ ଆଡେ କୁଳୁ କୁଳୁ କରି ଚାହୁଁଥିଲା। ବୟସ ତୁଳନାରେ ସେ ଟିକିଏ ଡେଙ୍ଗା ଆଉ ଟାଣୁଆ। ମାଥା ଉଚା।

ମୁହଁଟି ଗୋଲ ଆଉ ବଡ଼ । ଉଜ୍ଜ୍ୱଳ ଆଖି ଦୁଇଟିରେ ସେ ମାଆଙ୍କର ଘରେଷେଇ କାମସବୁ ଲକ୍ଷ୍ୟ କରୁଥିଲେ । ମାଆ କେତେ ହଇରାଣ ହେଉଛନ୍ତି ସତେ ? କୋଇଲାରେ ପୁଣି ହାତ ଦୁଇଟି କଳା !

ଟମି ହଠାତ୍ କହି ଉଠିଲେ—ମାଆ, କୋଇଲା କାରବାର କରୁଥିବା କୋଦାଳର ବେଣ୍ଟ ଟିକିଏ ବଡ଼ କରିଥିଲେ ଭଲ ହୋଇଥାନ୍ତା । ତୁମଙ୍କୁ ଏତେ ନଇଁବାକୁ ପଡ଼ୁନଥାନ୍ତା ! ତୁମର ହାତ କେଡ଼େ ଅସନା ହୋଇଛି ?

ଟମିର ମାଆ ଟିକିଏ ଅବାକ୍ ହେଲେ । ପିଲାଟିଏ । ତାର ପୁଣି କେତେ ଆଡ଼କୁ ନଜର । ସେ ମୁରୁକି ହସି କହିଲେ—ଯାହା କହିଲୁ । ହେଇଥିଲେ ଭଲ ହୋଇଥାନ୍ତା । କିନ୍ତୁ ଆଗରୁ ମୁଁ ଏକଥା ଜମା ଭାବି ନ ଥିଲି । କୋଇଲାରେ ତ ହାତ କଳା ହେବ । ଉପାୟ କ'ଣ ?

ମାଆ ଟିକିଏ ଭାବି ନ ଥିଲେ ଯେ ଏଇ ପିଲା ବଡ଼ ହୋଇ ଲକ୍ଷ ଲକ୍ଷ ମାଆଙ୍କର ଦୁଃଖ ଦୂର କରିବ । ମାଆମାନଙ୍କୁ ଘରେଷେଇ ବାସ କରିବା ପାଇଁ ଆଉ କୋଇଲା କାରବାର କରିବାକୁ ପଡ଼ିବ ନାହିଁ । ଏଡ଼େ ଏଡ଼େ କିରୋସିନ ତେଲ ବତୀକୁ ସଫା କରିବାକୁ କି ତେଲ ପୂରାଇବାକୁ ହେବ ନାହିଁ । ଗରମ ପାଣିରେ ଏତେ ବାସନ କୁସନ ହାତରେ ମାଜିବାକୁ ପଡ଼ିବ ନାହିଁ । ଟମିର ଟିକି ମୁଣ୍ଡରୁ ଯେ ବିଜୁଳି ଆଲୁଅ ଆଉ ବିଜୁଳିର ଅନେକ ଦରକାରୀ କଳ ବାହାରିବ ବୋଲି କିଏ ଜାଣିଥିଲା ? ସବୁକଥା ବୁଝିବା ପଚାରିବା ଆଉ କିମିତି ଭଲ କରିହେବ ସେ ଦିଗରେ ମନେ ମନେ ଚିନ୍ତା କରିବା ଯୋଗୁଁ ଟମି ଏଡ଼େ ବଡ଼ ବୈଜ୍ଞାନିକ ହୋଇ ପାରିଥିଲେ ।

ରବି ପଚାରିଲା ଭାଇ, ଟମି ତ ବଡ଼ ବଡ଼ ସ୍କୁଲ କଲେଜରେ ନିଶ୍ଚୟ ବହୁତ ପାଠ ପଢ଼ିଥିବେ ?

ଭାଇ କହିଲେ—ସେ କଥା ମୁଁ କହୁଛି ଶୁଣ । ଛଅ ସାତ ବର୍ଷ ହେବାରୁ ଟମିଙ୍କୁ ଗୋଟିଏ ବିଦ୍ୟାଳୟରେ ଭର୍ତ୍ତି କରିଗଲା । କିନ୍ତୁ ଦୁଇତିନି ମାସ ପରେ ଟମିର ମାଆଙ୍କୁ ଶିକ୍ଷକ କହିଲେ—ପିଲାଟା ଭାରି ବୋକା । ସେ ଜମା ପଢ଼ାପଢ଼ି କରି ପାରୁନାହିଁ । ଏଥିପାଇଁ ତାର ତିଳେ ହେଲେ ଚେଷ୍ଟା ବି ନାହିଁ । ଅବଶ୍ୟ ସେ ଚଗଲା ନୁହେଁ । କିନ୍ତୁ ସେ ବସି ଖାଲି ସ୍ୱାଡ଼ୁ ସ୍ୱାଡ଼ୁ କଣ ଗୁଡ଼ାଏ ଗାରେଇବାରେ ବ୍ୟସ୍ତ । ସେଥିରୁ ପୁଣି କିଛି ହେଲେ ବୁଝି ହେଉ-ନାହିଁ । କେତେକ ଯନ୍ତ୍ରପାତିର ଛବି ପରି ଦିଶୁଛି । କିନ୍ତୁ ସେମିତି ଯନ୍ତ୍ରପାତି ତ ମୁଁ ଆଖି ଫିଟିଲାଠାରୁ ଦେଖିନାହିଁ !

ଟମିଙ୍କର ମାଆ ଅନ୍ୟମାନଙ୍କର ଏମିତି ମତାମତ ବହୁତ ଶୁଣି ଥିଲେ । ଏମିତି କି ଟମିଙ୍କର ବାପା ମଧ୍ୟ ତାଙ୍କୁ ଏଭଳି କେତେକଥା କହୁଥିଲେ । ସେ କିନ୍ତୁ ପୁଅର ମନ କଥା ବୁଝୁଥିଲେ । କାଲଠାର କାଲ ମାଆ ଜାଣେ । ମାଆ ତେଣୁ ଶିକ୍ଷକଙ୍କୁ କହିଲେ— ଟମି ବୋକା ନୁହେଁ । କିନ୍ତୁ ସେ ଯାହା ପାଠ ପଢ଼ିବାକୁ ଚାହୁଁଛି, ଏଠି ତାହା ନାହିଁ କି ଯେମିତି ସେ ପଢ଼ିବାକୁ ମନ କରୁଛି, ଆପଣ ତାକୁ ସେମିତି ପଢ଼ାଇ ପାରୁ ନାହାନ୍ତି । ଆପଣଙ୍କର ଏଠି କେତେ ଶ୍ରେଣୀ । ପୁଣି ପ୍ରତି ଶ୍ରେଣୀରେ କେତେ ବୟସର ପିଲା । କାହାକୁ କେଉଁ ପାଠ ପଢ଼ାଇବେ ? ମୋର ତ ଛଅଟି ପିଲା । ସମସ୍ତେ ଟମିଠାରୁ ବଡ଼ । ତେଣୁ ମୁଁ ତାକୁ ପଢ଼ାଇଲେ ଭଲ ହେବ ।

ଶିକ୍ଷକ ଭାବିଲେ ଟମିର ମାଆ ବଡ଼ ଉଦ୍ଧତ । ସେ ଏଭଳି ପିଲାଙ୍କୁ ଆହୁରି ଖରାପ କରିବେ । ଏମିତି ମାଆ ପାଖରେ ବୋକା ପିଲା ବି ବାଲୁଙ୍ଗା ହୁଅନ୍ତି । ମାଆ ଟମିକୁ ଧରି ନେଲାବେଳେ ଶିକ୍ଷକ ଶୁଣାଇ ଶୁଣାଇ କହିଲେ—ସେ କେମିତି ପିଲାଟେ, ନିଜେ ବୁଝିବ ଯେ ।



[ ଟମି ତାଙ୍କ ଘରେ ବସି ବିଭିନ୍ନ ପ୍ରକାର ପରୀକ୍ଷା କରୁଛନ୍ତି ]

ଟମି ଏହାପରେ ଆଉ କେଉଁ ବିଦ୍ୟାଳୟକୁ ପଢ଼ିବାକୁ ଯାଇ ନଥିଲେ । କିନ୍ତୁ ମାଆଙ୍କର ଆଦର ଯତ୍ନରେ ସେ ଶୀଘ୍ର ବହୁତ ପାଠ ପଢ଼ିଗଲେ । ସେ ସବୁକଥାରେ ଏତେ ଆଗ୍ରହୀ ଯେ ତାଙ୍କୁ ଦଶବର୍ଷ ହେଲା ବେଳକୁ ଇତିହାସ ଓ ବିଜ୍ଞାନରେ ବହୁତ ଭଲ ବହି ପଢ଼ି ସାରିଥିଲେ । ସେ କୌଣସି ନା କୌଣସି କାମରେ ସଦାବେଳେ ବ୍ୟସ୍ତ ରହୁଥିଲେ ।

ଟମି ତାଙ୍କ ଘରର ଗୋଟିଏ ଛୋଟ ବଖରାରେ ବୋତଲ, ଶିଶି, କାଚପାତ୍ର, କାଚନଳୀ ପ୍ରଭୃତି ରଖିଥିଲେ । ସେଠାରେ ପୁଣି ନାନାପ୍ରକାର ରସାୟନିକ ପଦାର୍ଥର ଭିଡ଼ ଜମି ଥିଲା । ଟମି ମଧ୍ୟ ସବୁଥିରେ କେତେକ ପରୀକ୍ଷା ଚଳାଉଥିଲେ । ଫଳରେ ଅନେକ ସମୟରେ ସେଇ ଘରଟିର ବହୁ ଦୁର୍ଗନ୍ଧ ଧୂଆଁ, ଶବ୍ଦ ଆଦି ବାହାରୁଥିଲା । ଥରେ ସେଇ କୋଠରୀରୁ ନିଆଁ ଉଠିଯାଇଥିଲା ଆଉ ନିଜ ସହିତ ଜିନିଷପତ୍ର ଜଳିପୋଡ଼ି ଯାଇଥିଲା । ତେବେ ସୁଦ୍ଧା ଏଥିରେ ତାଙ୍କର ଜମା ଶୋଚନା ନ ଥିଲା । ସେ ଅନବରତ ଖୁସି । ତାଙ୍କ ହସରେ ଘର ଫାଟି ପଡ଼ୁଥିଲା ।

ଟମିକୁ ବାରବର୍ଷ ହେଲାବେଳକୁ ସେ ବିଜ୍ଞାନର ବହୁ ବିଷୟରେ ଜାଣି ଦେଇ ଥିଲେ । ସେ କେତେକ ବାଷ୍ପର ପରୀକ୍ଷା କରି ପାରୁଥିଲେ । ଏଥିପାଇଁ ବହୁ ଟଙ୍କା ଯୋଗାଡ଼ କରିବାକୁ ପଡ଼ୁଥିଲା । ତେଣୁ ସେ ଅନ୍ୟର କାମଦାମ କରି ଦରକାର ପଡ଼ୁଥିବା ଟଙ୍କା ରୋଜଗାର କରିବାକୁ ଠିକ୍‌କଲେ । ସେଇ ସହର ଭିତରେ ଯାଇଥିବା ରେଲରାସ୍ତାର ହାକିମଙ୍କୁ ସେ ଦେଖାକଲେ । ଜଣେ ଖବର କାଗଜ ବିକାଳି ଭାବରେ ଟମି ଗୋଟିଏ ଚାକିରୀ ପାଇଲେ । ସେ ଗାଡ଼ିରେ ପତ୍ର ପତ୍ରିକା ବିକାବିକି କରୁଥିଲେ । ସେ ମଧ୍ୟ ଆଉ କେତେକ ପିଲାଙ୍କୁ ଏଇ କାମ ପାଇଁ ରଖିଥିଲେ । ସେମାନଙ୍କୁ ସେ ଯାହା କିଛି ଭାଗ ଦେଇ ସହଜରେ ନିଜ କାମ କରାଇ ନେଉଥିଲେ । ପିଲାମାନେ ମଉଜ ମଜଲିସ୍ ମଝରେ କାମଦାମ ଚଳାଉଥିଲେ ।

ରେଲଗାଡ଼ିରେ ବୁଲି ପତ୍ରପତ୍ରିକା ବିକିବା କାର୍ଯ୍ୟ ଭିତରେ ଦୁଇଟି ଦୁର୍ଘଟଣା ଘଟିଥିଲା । ଥରେ ଗାଡ଼ିର ଗୋଟିଏ ଲୋକ ହଠାତ୍ କାଇଁକି ରାଗି ଚଳନ୍ତା ଗାଡ଼ି ଭିତରକୁ ଉଠି ଆସିଲା । ଟମିଙ୍କର କାନ ଖୁବ୍ ଜୋରରେ ଟାଣିଦେଲା । ଫଳରେ ଟମି କାଲ ହୋଇ-ଗଲେ । ତା ପରେ ଆଉ ସେ ତାଙ୍କର କାନକୁ ଭଲ କରି ପାରି ନ ଥିଲେ । ଟମି କିନ୍ତୁ ଏଥିପାଇଁ ଦୁଃଖିତ ହେଲେ ନାହିଁ । ବରଂ ସେ କହିଲେ ଯାହା ହେଉ ମୁଁ ଅଦରକାରୀ କଥାଗୁଡ଼ାକ ଶୁଣି ପାରୁନାହିଁ । ତେଣୁ ମୋ କାମରେ ମୁଁ ମନ ଦେଇ ଲାଗି ପାରୁଛି ।

ଆଉ ଗୋଟିଏ ଦୁର୍ଘଟଣା କଥା କହୁଛି ଶୁଣ । ଟମି ରେଲଗାଡ଼ିରେ ଗୋଟିଏ ମାଲ ଡବାକୁ ଏକ ପରୀକ୍ଷା ଘରରେ ପରିଣତ କରି ଗାଡ଼ି ଚାଲୁଥିଲା ବେଳେ ସେଇଠି ସେ କେତେକ ପରୀକ୍ଷା ଆଦି କରୁଥିଲେ । ଦିନେ ଗୋଟିଏ କାଚପାତ୍ର ତାଙ୍କ ହାତରୁ ଖସି

ପଡ଼ିଲା । ଚଟାଣରେ ପିଟିହେଇ ଡବାସାରା ନିଆଁ ଖେଳିଗଲା । ଗାଡ଼ି ମାଲିକ ବିରକ୍ତ ହୋଇ କହିଲେ -ସବୁ ସାରିଥିଲୁ ଟମ୍, ତୁ ଶୀଘ୍ର ବିଦା ହୋଇଯାଆ । ଟମିଙ୍କର ରେଲଗାଡ଼ିରେ ପତ୍ର ପତ୍ରିକା ବିକା କାମ ଏତିକିରେ ଇତି ହେଲା ।

ରବି କହିଲା—ଭାଇ, ଟମି ତ ତାହେଲେ ମାଆଙ୍କ ପାଖରେ ଯାହା ପଢ଼ିଥିଲେ ଆଉ ତାଙ୍କ ମନକୁ ମନ କି ଏତେ ପାଠ ପଢ଼ିଗଲେ ? ଏତେ ଅସୁବିଧା ଭିତରେ ସେ କିମିତି ଏତେ କଥା କରୁଥିଲେ ?

ଭାଇ କହିଲେ—ମନ ଥିଲେ ମସ୍ତିଷ୍କକୁ ବାଟ ଦିଶେ । ଏଥି ପୂର୍ବରୁ ଗୋଟିଏ ଘଟଣା ଘଟିଥିଲା, ଯାହା ଟମିଙ୍କୁ ଜଣେ ବଡ଼ ବୈଜ୍ଞାନିକ ହେବାରେ ସାହାଯ୍ୟ କରିଥିଲା । ରେଲ-ରାସ୍ତାକୁ ଲାଗିଥିବା ଟେଲିଗ୍ରାଫ୍ ତାରର ମରାମତି କରୁଥିବା ଲୋକମାନେ ଟମିଙ୍କର ଭାରି ସାଙ୍ଗ ସାଥି ହୋଇ ଯାଇଥିଲେ । ସେ ସେମାନଙ୍କୁ କେତେବେଳେ ପୁରୁଣା ପତ୍ର ପତ୍ରିକା ଆଉ ଖାଇବା ଜିନିଷ ଦେଉଥିଲେ । ଦିନେ ଟମି ସେଠାରେ ଟେଲିଗ୍ରାଫ୍ ବାବୁ ମ୍ୟାକେଞ୍ଜି ସାହେବଙ୍କ ସହିତ କଥାବାର୍ତ୍ତା କରୁଥିଲେ । ସେ ସମୟରେ ଗୋଟିଏ ମାଲଗାଡ଼ି ପାହାଡ଼ ଉପରୁ ତାଙ୍କ ଆଡ଼କୁ ଗଡ଼ି ଆସିଲା । ମ୍ୟାକେଞ୍ଜି ସାହେବଙ୍କ ସାନ ପିଲାଟି ଗାଡ଼ି ଆଗରେ ଖେଳୁଥିଲା । ଆଖି ପିଛୁଳାକେ ଟମି ପିଲାଟି ଆଡ଼କୁ ଧାଇଁଗଲେ । ତାକୁ କୋଳେଇ ଆଣି ଅଳ୍ପ ଦୂରକୁ ଫିଙ୍ଗିଦେଲେ । କିନ୍ତୁ ନିଜେ ରାସ୍ତା ଉପରୁ ହଠାତ୍ ଉଠି ଆସି ପାରିଲେ ନାହିଁ । ଟମିଙ୍କର ଗୋଟିଏ ଗୋଡ଼ ଗାଡ଼ି ତଳେ ପେଷି ହୋଇ ଛିଣ୍ଡିଗଲା । ମ୍ୟାକେଞ୍ଜି ସାହେବ ଏଥିଯୋଗୁଁ ଟମିଙ୍କ ଉପରେ ଏତେ ଖୁସି ହୋଇଗଲେ ଯେ ସେଠାରେ ଯାହା ଚାହିଁବେ ତାହା ତାଙ୍କୁ ଦେବେ ବୋଲି ପ୍ରକାଶ କଲେ ।

ସେତେବେଳେ ଟମି ମ୍ୟାକେଞ୍ଜି ସାହେବଙ୍କୁ କ'ଣ ମାଗିଲେ ଜାଣ ? ଟେଲିଗ୍ରାଫ୍ କାମ ଶିଖାଇଦେବା ପାଇଁ ସେ ତାଙ୍କୁ କହିଲେ । ମ୍ୟାକେଞ୍ଜି ବଡ଼ ଆଶ୍ଚର୍ଯ୍ୟ ହେଲେ । ଗାଡ଼ିରେ ପତ୍ରପତ୍ରିକା ବିକି ଯେଉଁ ପିଲା ପେଟ ପୋଷେ, ସେ ପୁଣି ଟେଲିଗ୍ରାଫ କାମ ଜାଣିବା ପାଇଁ ଏତେ ମନ କରୁଛି ! ସେତେବେଳେ ଟମିଙ୍କୁ ମୋଟେ ଷୋଳ ବର୍ଷ । ଦିନ ରାତି ଲାଗି ସେ ଏହା ଶିଖି ଗଲେ, ଆଉ ଏ ବିଭାଗରେ ଭଲ ଚାକିରୀଟିଏ ବି ଶୀଘ୍ର ପାଇ-ଗଲେ । କିନ୍ତୁ ଟମି ତାଙ୍କର ନୂଆ ନୂଆ କାମ କରିବା ଅଭ୍ୟାସ ଛାଡ଼ୁଛନ୍ତି କେତେକ ? ସେତେବେଳେ ମୋର୍ସଙ୍କର ଟେଲିଗ୍ରାଫ ରୀତି ଚଳୁଥିଲା । କିନ୍ତୁ ଏକ ସମୟରେ ଗୋଟିଏ

ତାରରେ ଗୋଟିଏ ସମ୍ବାଦ ହିଁ ପଠାଯାଇ ପାରୁଥିଲା । ତେବେ ତାରଗୁଡ଼ିକ ଅପେକ୍ଷା ଅଧିକ ସମ୍ବାଦ ପଠାଇବା ଦରକାର ପଡ଼ୁଥିଲା ।

ଟମି କିପରି ଏହା କରିପାରିବେ, ସେଥିପାଇଁ ଅବିଶ୍ରାନ୍ତ ପରିଶ୍ରମ କରୁଥିଲେ । ଏହା ଦେଖି ଟେଲିଗ୍ରାଫରେ କାମ କରୁଥିବା ଲୋକମାନେ ଭାବୁଥିଲେ ଟମି ଖାଲି ବୃଥାରେ ଏଥିରେ ଲାଗି ସମୟ ଆଉ ଶକ୍ତି ନଷ୍ଟ କରୁଛନ୍ତି । କିନ୍ତୁ ଶେଷରେ ଟମି ସଫଳ ହେଲେ । ସେ ଗୋଟିଏ ଉପାୟ ବାହାର କଲେ, ଯେଉଁଥିରେ ଗୋଟିଏ ତାରରେ ଏକାବେଳେ ଚାରୋଟି ଖବର ପଠାଯାଇ ପାରିଲା । ତାରର ଗୋଟିଏ ଦିଗରୁ ଦୁଇଟି ଓ ଅନ୍ୟଦିଗରୁ ଦୁଇଟି କରି ଖବର ପଠାଯାଇ ପାରିଲା ।

ଯେତେବେଳେ ଟମି ଏଡ଼ିସନଙ୍କୁ ଅଠର ବର୍ଷ ହୋଇଥିଲା, ସେ ଟେଲିଗ୍ରାଫରେ ଏତେ ବଡ଼ କଥାଟିଏ ନୂଆ କରି ବାହାର କଲେ ସୁଦ୍ଧା ଲୋକମାନେ ସେଥିରେ ବିଶ୍ୱାସ କଲେ ନାହିଁ । ତା'ର ପ୍ରଧାନ କାରଣ ହେଲା ସେ ନିଜର ଚେହେରା ଆଉ ପୋଷାକପତ୍ର ପ୍ରତି ଜମା ନଜର ଦେଉ ନ ଥିଲେ । ତାଙ୍କର କୋଟଟା ସାଧାରଣତଃ ମଇଳା ଆଉ ଲୋଚ୍ରାକୁଚ୍ରା ହେଉଥିଲା । ମୁଣ୍ଡ ବାଳ ବେଶୀ ବଢ଼ି ଯାଉଥିଲା । ଯୋତା ଫାଟି ଆଁ କରୁଥିଲା । ଆଉ ତା ଭିତରେ ମୋଜା ଦିଶୁଥିଲା । ସେ ଏମିତି ବନ୍ଧୁ କାଗରେ ଟେଲିଗ୍ରାଫ କାମ କରିଥିଲେ । ଶେଷରେ ବୋଷ୍ଟନଠାରେ ତାଙ୍କର ମହତ୍ତ୍ୱ ଲୋକେ ବୁଝିଲେ ।

ସେ ଟିକିଏ କାଲ ଥିଲେ ସୁଦ୍ଧା ଟେଲିଗ୍ରାଫ ତାରରେ ଆସୁଥିବା ଶବ୍ଦମାନଙ୍କୁ ସେ ଆନନ୍ଦର ସହିତ ଅନୁଭବ କରୁଥିଲେ । ବୋଷ୍ଟନଠାରେ ସେ ଟେଲିଗ୍ରାଫ କାମରେ ରହିଥିଲେ । ଅନ୍ୟମାନେ ତାଙ୍କ ସହିତରେ କାମ କରି ଭାରି ଆଡ଼ମ୍ବରରେ ଚଳୁଥିଲେ । ଚକଚକିଆ ପୋଷାକ ପିନ୍ଧୁଥିଲେ । ଟମ୍ ଏଡ଼ିସନଙ୍କର ଛିଣ୍ଡା ପୋଷାକ, ଅଣକଡ଼ା ଲମ୍ବା ବାଳ, ଆଉ କଣାଫଟା ଯୋତା ଦେଖି ସେ ଭଲ ଭାବରେ କାମ କରି ପାରୁନଥିବେ ବୋଲି ତାଙ୍କର ସହକର୍ମୀମାନେ ଭାବୁଥିଲେ । ତେଣୁ ଯେଉଁ ଭିଡ଼ କାମକୁ ସେ କରି ପାରିବେ ନାହିଁ ଭାବି ସେମାନେ ତାଙ୍କୁ କରିବାକୁ ଦେଉଥିଲେ, ସେ ତାକୁ ଅତି ସହଜରେ କରି ଦେଉଥିଲେ । ଦିନେ ଯେଉଁ ଲୋକ ଖୁବ୍ ଶୀଘ୍ର ତାରରେ ଖବର ଦେଇପାରନ୍ତି, ସେ ତାଙ୍କର ସବୁଠୁଁ ଅଧିକ ଶକ୍ତି ଖଟାଇ ଯେତେ ଖବର ପଠାଇଲେ ସୁଦ୍ଧା ଟମି ସେ ସବୁକୁ ନିଭୁଲ

ଭାବରେ ଲେଖିନେଲେ । ଦୀର୍ଘ ଚାରିଘଣ୍ଟା ଧରି ଏମିତ କରି ଶେଷରେ ଟମି ହସି ହସି ତାଙ୍କୁ କହିଲେ—ଆଉ ଟିକିଏ ଅଧିକ ଜୋରରେ ଖବର ପଠାନ୍ତେ ନାହିଁ ! ସବୁ ସହକର୍ମୀ ଏହା ଦେଖି ବିସ୍ମିତ ହେଲେ, ଆଉ ଟମିଙ୍କୁ ପ୍ରଶଂସା ନ କରି ରହି ପାରିଲେ ନାହିଁ ।

ସେତେବେଳେ ଯେଉଁ ଲୋକ ନୂଆ କରି କିଛି ଯନ୍ତ୍ରପାତି ବାହାର କରୁଥିଲେ, ତାକୁ ସେ ଓ୍ୱାସିଂଟନ ପଠାଉଥିଲେ । ଏଥିପାଇଁ ସେ ସରକାରଙ୍କୁ କେତେ ପାଉଣା ମଧ୍ୟ ଦେଉଥିଲେ । ଏହାପରେ ଯୁକ୍ତରାଷ୍ଟ୍ର ସରକାର ସେଥିପାଇଁ ପେଟେଣ୍ଟ ଦେଉଥିଲେ । ଆଉ ସେ ଲୋକ ତାକୁ ବିକି ଓ ବ୍ୟବହାର କରି ଧନ ରୋଜଗାର କରୁଥିଲେ । କିନ୍ତୁ ଟମି ଟେଲିଗ୍ରାଫରେ ଯାହା ନୂଆ କରି ବାହାର କଲେ, ସେଥିପାଇଁ ପେଟେଣ୍ଟ ପାଇବାକୁ ଇଚ୍ଛା କରୁଥିଲେ । ମାତ୍ର ଏଥିପାଇଁ ଉଚିତ ପାଉଣା ନ ପାଇବାରୁ ଟମ ତାକୁ ପେଟେଣ୍ଟ ପାଇଁ ଓ୍ୱାସିଂଟନ ପଠାଇ ପାରିଲେ ନାହିଁ । ସେ ମଧ୍ୟ ବୋଷ୍ଟନରେ ଥିଲାବେଳେ ତାଙ୍କ ଠାରୁ ତାକୁ କିଏ ଚୋରି କରିନେଲା । ସେ ତେଣୁ ବଡ଼ ହତାଶ ହୋଇ ପଡ଼ିଲେ ଏବଂ ନିୟୁୟର୍କ ସହରକୁ ଗଲେ ଭଲ ହେବ ବୋଲି ଭାବିଲେ ।

ଟମି ଏଡ଼ିସନ ନିୟୁୟର୍କକୁ ରେଲଗାଡ଼ିରେ ଆସିଲେ । ପଇସାଟିଏ ସୁଦ୍ଧା ପାଖରେ ନ ଥିଲା । ସେ କୋଇଲା କଳା ଇଞ୍ଜିନ୍ ପାଖରେ ବସି ଯାଇଥିଲେ ଆଉ ଇଞ୍ଜିନିୟରଙ୍କ ଠାରୁ ଯାହା ହାତଟେକା କିଛି ଖାଇଥିଲେ । ଲୁଗାପଟା ଦେଖଣ୍ତ ପୂରା କଳା ଅସନା ହୋଇଯାଇ-ଥିଲା । ଏତେ ଅସୁବିଧା ଭିତରେ ସୁଦ୍ଧା ସେ ଆଗେଇ ଚାଲିଥିଲେ ।

ଏତେବେଳେ ସେ ଏକ ଜାଗରେ ଜଣଙ୍କର ଗୋଟିଏ ଭଙ୍ଗା ଯନ୍ତ୍ରକୁ ସଜାଡ଼ି ଦେଲେ । ଏତେ ଶୀଘ୍ର ଆଉ ଏତେ ଭଲ ଭାବରେ ସେ ମରାମତ କରିଦେଲେ ଯେ, ସେଠାରେ ସେ ଗୋଟିଏ ଇଞ୍ଜିନିୟର ଚାକିରୀ ପାଇଲେ । ଖୁବ୍ ଭଲ ଦରମା ମଧ୍ୟ ପାଇଲେ । ତେବେ ସୁଦ୍ଧା ଟମି ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ସେ ନିଜେ ଗୋଟିଏ କଲକାରଖାନାର ମାଲିକ ହେଲେ ସ୍ୱାଧୀନ ଭାବରେ ନୂଆ କାମ କରିପାରିବେ ବୋଲି ଭାବିଲେ ।

ଏଇ ସମୟରୁ ଟମି [ଟମାସ] ଏଡ଼ିସନ ତାଙ୍କର ମୂଲ୍ୟବାନ୍ ଉଦ୍ଭାବନଗୁଡ଼ିକ ପାଇଁ ଅମାପ ଅର୍ଥ ପାଇଥିଲେ । କିନ୍ତୁ ସେ ଅର୍ଥ ପ୍ରତି ଜମା ଆଗ୍ରହୀ ନଥିଲେ । ଅନବରତ ବିଜ୍ଞାନଚର୍ଚ୍ଚା କରିବା ଓ ନୂଆ ନୂଆ ଜିନିଷମାନ ବାହାର କରି ଲୋକଙ୍କ ସୁବିଧା ପାଇଁ ଦାନ କରିଯିବାକୁ ସେ ଜୀବନରେ ସବୁଠାରୁ ଆନନ୍ଦ ଦାୟକ କଥା ବୋଲି ଭାବୁଥିଲେ ।

ସେ ତେଣୁ ଯାହା ପାଉଥିଲେ ନୂତନ ପଦାର୍ଥ ଗୁଡ଼ିକର ପରୀକ୍ଷା ଓ ଉଦ୍ଭାବନରେ ଖର୍ଚ୍ଚ କରୁଥିଲେ । କିନ୍ତୁ ସେଇପରି ସଦାବେଳେ ତାଙ୍କର ଲମ୍ବା ନୁଖୁରା ବାଳ ଢ଼ିଲା ମଇଲା ପୋଷାକ ହିଁ ରହିଥିଲା । ସଦାବେଳେ ସବୁରି ସହିତ ତାଙ୍କର ହସଖୁସି, ଶାନ୍ତସରଳ ବ୍ୟବହାର । ସେ ପ୍ରତିଦିନ ପ୍ରାୟ କୋଡ଼ିଏ ଘଣ୍ଟାକାଳ କାର୍ଯ୍ୟରେ ବ୍ୟସ୍ତ ରହି ବାକୀ ଚାରିଘଣ୍ଟା ମାତ୍ର ଖାଇବା ଓ ଶୋଇବା ପ୍ରଭୃତିରେ କଟାଉଥିଲେ ।



[ ଏଡ଼ିସନଙ୍କ ଉଦ୍ଭାବନ ]

ଆଲେକ୍‌ଜାଣ୍ଡର ଗ୍ରାହାମ୍ ବେଲ୍ ଯେଉଁ ଟେଲିଫୋନ ଉଦ୍ଭାବନ କରିଥିଲେ, ସେଥିରେ ବହୁ ତ୍ରୁଟି ଆଉ ଅଭାବ ରହିଯାଇଥିଲା । କିନ୍ତୁ ଟମାସ ଏଡ଼ିସନ ଦୁଇବର୍ଷ କାଳ ଅକ୍ଳାନ୍ତ ପରିଶ୍ରମ କରି ଟେଲିଫୋନର ଉନ୍ନତି କରିଥିଲେ ଏବଂ ତାହା ସର୍ବସାଧାରଣ ଲୋକମାନେ ବ୍ୟବହାର ପାଇଁ ସହଜ ଓ ସୁବିଧାଜନକ ହୋଇଥିଲା ।

ତାପରେ ସେ ମନୁଷ୍ୟ ସ୍ୱରକୁ ଗୋଟିଏ ଯନ୍ତ୍ରରେ ଧରି ରଖିବାକୁ ଇଚ୍ଛା କରିଥିଲେ । ତାଙ୍କ ପୂର୍ବରୁ ଏ ଦିଗରେ କେହି ଚେଷ୍ଟା କରି ନ ଥିଲେ । ମନୁଷ୍ୟର ସ୍ୱରକୁ ଯନ୍ତ୍ରରେ ଧରି ରଖି ପରେ ସେଇ ଯନ୍ତ୍ରକୁ ବଜାଇ ଶୁଣିବା ପାଇଁ ସେ ଭାରି ମନ କଲେ । ଦିନ ରାତି ଏଥିରେ ସେ ଲାଗିପଡ଼ିଥିଲେ । ସେ ପ୍ରଥମେ ଗୋଟିଏ କଳ ବାହାର କଲେ । ସେଥିରୁ ଅତି କ୍ଷୀଣ ଶବ୍ଦ ଶୁଣାଗଲା । ସେ ଏଇ ସଫଳତାରେ ଭାରି ଉତ୍ସାହିତ ହେଲେ ।

ଆଜିକୁ ପ୍ରାୟ ଶହେ ବର୍ଷ ତଳେ ସେ ସେଇ ଯନ୍ତ୍ରର ନକ୍‌ସା ଦେଇ ଜନକ୍ରୁଷି ନାମକ ଜଣେ କାରିଗରଙ୍କୁ କହିଲେ—କ୍ରୁଷି, ତୁମେ ଏଇ ଛାଞ୍ଚରେ ଗୋଟିଏ ଯନ୍ତ୍ର

ଗଢ଼ି ଦିଅ । ତୁମେ ତୁମର ମଜୁରି ପାଇବ । ଜନକ୍ରୁଷି ନକ୍‌ସାଟି ଦେଖି କହିଲେ—ଏହି ଯନ୍ତ୍ରରେ ଆପଣ କ'ଣ କରିବେ ?

ଏଡ଼ିସନ୍ କହିଲେ—ତୁମେ ଆଗ ଏ ଯନ୍ତ୍ରଟି ତିଆରି କରି ଦିଅ । ମୁଁ ଏହା ସାହାଯ୍ୟରେ ମନୁଷ୍ୟ ଶବ୍ଦକୁ ସବୁ ଦିନ ପାଇଁ ଧରି ରଖିବି, ଆଉ ପୁଣି ତୁମ୍ଭମାନଙ୍କୁ ଶୁଣାଇବି ।

କ୍ରୁଷି ହସି ହସି କହିଲେ—ଆପଣ କ'ଣ ପାଗଳ ହୋଇଛନ୍ତି ନା କ'ଣ ? ଯନ୍ତ୍ରଟି କିପରି ମଣିଷର କଥାକୁ ସାଇତି ରଖିବ ?

ଟମାସ ଏଡ଼ିସନ କ୍ରୁଷିଙ୍କୁ ବୁଝାଇ ଦେବାରୁ ସେ ମନ ଦେଇ ନକ୍‌ସା ଅନୁଯାୟୀ ଯନ୍ତ୍ରଟିଏ ଗଢ଼ିଦେଲେ । ଏଡ଼ିସନଙ୍କ ଉଦ୍ଦେଶ୍ୟ ସଫଳ ହେଲା । ତାଙ୍କର ଉଚାରଣ ଶବ୍ଦ ସବୁ ଏହି ଯନ୍ତ୍ରରେ ଗୁ ନ୍ଥି ହୋଇ ରହିଲା । ସେ ଯେତେବେଳେ ପୁଣିଥରେ ସେଇ ଶବ୍ଦକୁ ଶୁଣାଇଲେ କ୍ରୁଷିଙ୍କ ସହିତ ଅନ୍ୟ ସମସ୍ତେ ଅତି ଆଶ୍ଚର୍ଯ୍ୟ ହେଲେ । ଏଇ ଯନ୍ତ୍ରକୁ ଫନୋଗ୍ରାମ ବୋଲି କୁହାଗଲା । ଏଡ଼ିସନ ତ କାଲ ଥିଲେ କିନ୍ତୁ ଗୀତ ଶୁଣିବାରେ ତାଙ୍କର ଭାରି ଝୁଙ୍କ ଥିଲା । ତେଣୁ ସେ ଏଇ ଯନ୍ତ୍ର ସାହାଯ୍ୟରେ ନିଜ ମନ ଖୁସିରେ ଗୀତ ଶୁଣି ଆନନ୍ଦ ଉପଭୋଗ କରୁଥିଲେ । ଏହାଦ୍ୱାରା ଏଡ଼ିସନ ଅତି ଜଣାଶୁଣା ହୋଇଗଲେ ।

ଏଡ଼ିସନଙ୍କ ସମୟରେ ରାସ୍ତାକଡ଼ରେ ଗ୍ୟାସ ଆଉ କିରୋସିନୀ ବତୀ ଜଳାଇ ଆଲୋକିତ କରାଯାଉଥିଲା । ଲୋକମାନେ ସଂଧ୍ୟାରେ ନିଶୁଣି କମ୍ବା ଲମ୍ବା ବାଡ଼ ଆଉ କିରୋସିନୀ ତେଲ ଧରି ରାସ୍ତାକୁ ରାସ୍ତା ବୁଲି ବତୀମାନ ଲଗାଉଥିଲେ । ସକାଳେ ପୁଣି ଗୋଟିକ ପରେ ଗୋଟିଏ ବତୀ ଲିଭାଇ ଦେଉଥିଲେ । ଏଥିରେ ବହୁତ ପରିଶ୍ରମ ଓ ଧନ ଖର୍ଚ୍ଚ ହେଉଥିଲା । ତେଣୁ ଏଡ଼ିସନ ତାଙ୍କର ଆଉ କେତେ ଜଣ ସାଙ୍ଗଙ୍କ ସହିତ ଗୋଟିଏ ନୂତନ ପରୀକ୍ଷାରେ ଲାଗିଲେ । ପାଞ୍ଚବର୍ଷ କାଳ ସେମାନେ ଦିନ ରାତି ଏଥିରେ ଖଟିଲେ ଏଡ଼ିସନଙ୍କ ନୂଆ ଧାରଣା ଶେଷରେ ବାସ୍ତବ ରୂପ ନେଲା ।

ଦିନକର ସଂଧ୍ୟାବେଳେ ହଠାତ୍ ନିୟୁୟର୍କ ସହର ଆଲୋକିତ ହୋଇ ଉଠିଲା । ଟମାସ ଏଡ଼ିସନ ସହରର ଗୋଟିଏ ଜାଗାରେ ରହି କେବଳ ଏକମାତ୍ର ସୁଇଚ ଟିପି ଦେଇ-ଥିଲେ । ସାରା ସହରର ସବୁ ବତୀ ଉଜ୍ଜ୍ୱଳି ଉଠିଲା । ତା ଆରଦିନ ସକାଳେ ସେଇପରି ଗୋଟିଏ ସୁଇଚ ଟିପିଦେଲେ । ସବୁ ବତୀଗୁଡ଼ିକ ଆଖି ପିଛୁଳାକେ ଲିଭିଗଲା । କେତେ ଅଦ୍ଭୁତ କଥା ସତେ ? ଏଡ଼ିସନ ଏ ବିଷୟରେ କହୁଥିଲେ—ସେ ପିଲା ବୟସରେ ଯେତେ-

ବେଳେ କାହା ଘରକୁ ଯାଆନ୍ତୁ, ଅନ୍ଧାର କୋଠରୀରେ ଚାଲିବାକୁ ବାଟ ପାଆନ୍ତି ନାହିଁ । ଜଣେ ଲୋକ ଆଗ ଧାଇଁ ଯାଇ ତେଲ ଦୀପଟିଏ ଦିଆସିଲି ମାରି ଲଗାଇ ଦିଅନ୍ତି । ଆଲୁଅ-ଟିକୁ ଦୁଆର ପାଖକୁ ଆଣିଲେ ସେ ଘର ଭିତରକୁ ଯାଉଥିଲେ । ନଚେତ କାହା ଉପରେ ପଡ଼ି ତାଙ୍କର ଗୋଡହାତ କେତେଥର ଭାଙ୍ଗି ଯାଇଥିଲା । ଟମାସ ଏଡ଼ିସନଙ୍କ ନୂଆ ଉଦ୍ଭାବନ ଯୋଗୁଁ ସେ ସବୁ ଅସୁବିଧା ଘୁଞ୍ଚି ଯାଇଚି । ଦୁଆର ମୁହଁରେ ଥିବା ସୁଇଚ ଟିପି ଦେଲେ ଘର ସାରା ଉଜ୍ଜ୍ୱଳ ଆଲୋକରେ ଉଜୁଳି ଉଠୁଛି ।

ଶେଷରେ ସେ ଆହୁରି ବଡ଼ ବଡ଼ ଉଦ୍ଭାବନ କରି ତାହା ପୃଥିବୀକୁ ଦାନ କରି-ଥିଲେ । ସିନେମା ଚିତ୍ରଗୁଡ଼ିକୁ ଉଠାଇବା ପାଇଁ ଯେଉଁ କ୍ୟାମେରା (ଫଟୋ ଉଠାଇବା ଯନ୍ତ୍ର) ଦରକାର, ପ୍ରଥମେ ସେ ବାହାର କରିଥିଲେ । ସେ ସିନେମା (ଚଳଚିତ୍ର) ତିଆରି ପାଇଁ ଗୋଟିଏ ଷ୍ଟୁଡ଼ିଓ (କାରଖାନା) କରାଇଥିଲେ । ଏହାର ଉନ୍ନତିରେ ସେ ମନ ପ୍ରାଣ ଦେଇ ଲାଗିପଡ଼ିଥିଲେ । ଏଠାରେ ସେ ସର୍ବପ୍ରଥମେ ନୀରବ ଚଳଚିତ୍ର ତିଆରି କରିଥିଲେ । ସିନେମା ଶିଳ୍ପର ଉନ୍ନତି ଛଡ଼ା ସେ ଆଉ କେଉଁ ବିଷୟରେ କିଛି ଭାବୁ ନଥିଲେ । ସଦାବେଳେ ସେ ଏଥିରେ ମଜ୍ଜି ଯାଇଥିଲେ । ଆଜି ଏତେ ଲୋକପ୍ରିୟ ହୋଇଥିବା ଚଳଚିତ୍ରର ଉନ୍ନତି ମୂଳରେ ତାଙ୍କର ନୂତନ ଉଦ୍ଭାବନ ଓ ଉଦ୍ୟମ ରହିଛି ।

ମନୁଷ୍ୟ ଜୀବନକୁ ସହଜ, ମଧୁର ଓ ସୁଖମୟ କରିବା ପାଇଁ ଟମାସ ଏଡ଼ିସନ ସାରା ଜୀବନ ଲାଗିପଡ଼ିଥିଲେ । ସବୁରି ସୁଖରେ ସେ ସୁଖୀ ହେଉଥିଲେ । ଆଉ ସବୁରି ଦୁଃଖରେ ସେ ଦୁଃଖୀ ହେଉଥିଲେ । ସେ ଅନେକ ନୂଆ ପଦାର୍ଥ ଗଢ଼ି ଯାହା ଧନ କମେଇ ଥିଲେ, ବିଜ୍ଞାନର ଚର୍ଚ୍ଚା ଓ ସାଧାରଣ ଲୋକଙ୍କ ସୁଖ ସୁବିଧା ପାଇଁ ଖର୍ଚ୍ଚ କରିଥଲେ । ସେ ଧନୀ ହୋଇ ସୁଦ୍ଧା ସରଳ, ନିରାଡ଼ମ୍ବର ଓ ବନ୍ଧୁତ୍ୱପୂର୍ଣ୍ଣ ଜୀବନ କଟାଇଥିଲେ । ସେ କିପରି ଏତେ ବଡ଼ ବଡ଼ କାମ କରି ପାରିଲେ ତୋ'ପରି କେହି ପଚାରିଲେ ସେ କହନ୍ତି— "ଶହେ ଭାଗ ସଫଳତାରେ ଦୁଇ ଭାଗ ପ୍ରେରଣା ଓ ଅଠାନବେ ଭାଗ ପରିଶ୍ରମ ହିଁ ରହିଛି ।" ସତରେ ଆଜିର ଜଗତ ତାଙ୍କ ଠାରେ ବହୁତ ଦିଗରେ ଋଣୀ ।

ଏଥି ଭିତରେ କେତେବେଳେ ବିଜୁଳି ଆଲୁଅ ଚାଲି ଆସିଚି, ରବିର ନଜର ନାହିଁ । ସେ ମନ ପ୍ରାଣ ଦେଇ ଭାଇଙ୍କର କଥାଗୁଡ଼ିକ ଶୁଣିଯାଉଥିଲା । ଆଖିରେ ତାର ପଲକ ପଡ଼ୁ ନ ଥିଲା । ମନ ଭିତରେ ଯେମିତି ଏ ସବୁ କଥା ଶୁଣି ଉଜ୍ଜ୍ୱଳ ହୋଇ ଉଠୁଛି । ମୁହଁଟି ବି ବିଜୁଳି ଆଲୁଅରେ ସେମିତି ଆହୁରି ତେଜୀୟାନ୍ ଦିଶୁଚି ।

--※--

# ଯାହାର କୁଲକାନ ଦଣ୍ଡାରେ ସାରା ଦୁନିଆଁର କଥା ଧରା ଦେଇଥିଲା

ଗାଁ ମୁଣ୍ଡ ବିଦ୍ୟାଳୟ । ରବି ଏଇଠାରେ ପାଠ ପଢ଼େ । ଆଜି ଖେଲଛୁଟି ହେଲା । କିନ୍ତୁ ପିଲାମାନେ କେହି କୁଆଡ଼େ ଯିବାର ଦିଶୁନାହିଁ । ସମସ୍ତେ ବିଦ୍ୟାଳୟ ବାରଣ୍ଡାରେ ରୁଣ୍ଡ । ସବୁରି ମନରେ ନୂଆ ଆଗ୍ରହ ଆଉ ଉତ୍ସାହ ଚେଇଁ ଉଠିଚି । ବାକ୍ସ ପରି ଯନ୍ତ୍ରଟିଏ । ସେଥିରୁ ପୁଣି କେତେ ଗୀତ, କେତେ ବାଜା, କେତେ କଥା ଶୁଣାଯିବ । କେତେ ନାଟ-ତାମସା ! କେତେ ରଙ୍ଗଲୀଲା ସେଥି ଭିତରୁ ଭାସି ଆସିବ । କୁହୁକପେଡ଼ିଟିଏ ସତେ ! ଯନ୍ତ୍ରଟିଏ ହୋଇ ଜୀବନର କେତେ କଥା କହୁଚି !



[ ପିଲାମାନେ ସ୍କୁଲ ଘରେ ରେଡ଼ିଓରୁ ଗୀତ ଶୁଣୁଛନ୍ତି ]

ଗୋଟିଏ ରେଡ଼ିଓ ଏବେ ସରକାରଙ୍କ ତରଫରୁ ଶସ୍ତାରେ ବିଦ୍ୟାଳୟକୁ ଯୋଗାଇ ଦିଆଯାଇଛି । ଆଗରୁ ସରସ୍ୱତୀ ଆଉ ଗଣେଶ ପୂଜାରେ ପିଲାମାନେ କେତେଥର କଲ-ଗାଉଣା (ଗ୍ରାମୋଫୋନ) ଯନ୍ତ୍ର ଆଣି ବଜାଇଥିଲେ । ସେଥିରେ ରେକର୍ଡ଼ ରଖି ତା ଉପରେ ପିନ୍ ଲଗାଇ ଚଲାଇଲେ ଗାୟକର ସ୍ୱରଛନ୍ଦରେ ଗୀତ ବାଜୁଥିଲା, କିନ୍ତୁ ରେଡ଼ିଓରେ ତ ରେକର୍ଡ଼ ଲଗାଯାଏ ନାହିଁ । କି ଅଦ୍ଭୁତ କଥା ! ଛାତ୍ରଛାତ୍ରୀମାନଙ୍କ ମନରେ ଅସୁମାରି ଆନନ୍ଦ ଆଉ ଉଦ୍‌ବେଗ ପ୍ରକାଶ ପାଇଛି । ହଠାତ୍ ରେଡ଼ିଓ ମଧ୍ୟରୁ ଘଡ଼ ଘଡ଼

ଶବ୍ଦ ଶୁଣାଗଲା । ପିଲାମାନେ କାନଡେଇ ରହିଁ ରହିଲେ । କେତୋଟି ଗୀତ, ସମ୍ବାଦ, ଆଉ ପାଠ ପଢ଼ାର ଆଲୋଚନା ଗୋଟିଏ ପରେ ଗୋଟିଏ ଶୁଣାଗଲା । ସତେ ଯେପରି ପାଖରେ କି ଅଳ୍ପ ଦୂରରେ କିଏ ବସି ଗୀତ ଗାଉଥିଲେ କି କଥା କହୁଥିଲେ ।

ରବିର ମନ କି ମୂଳକଥାଟା ନ ବୁଝି ଥୟ ଧରୁଚ ! ସେ ପଚାରିଲା--ଗୁରୁଜି ! ଏସବୁ କଥା, ଗୀତ କେଉଁଠୁ ଶୁଣାଯାଉଛି ?

ଗୁରୁଜୀ କହିଲେ—ଆଜି ଯେଉଁ ଗୀତ ଦୁଇଟି ଶୁଣିଲ ତାକୁ ଶ୍ରୀ ବାଳକୃଷ୍ଣ ଦାସ ବୋଲିଲେ । ତାହା କଟକ ରେଡ଼ିଓ ଷ୍ଟେସନରୁ ଆସିଲା । ସମ୍ବାଦ ପ୍ରଚାର ହେଲା ଦିଲ୍ଲୀ ରେଡ଼ିଓ କେନ୍ଦ୍ରରୁ । ଖାଲି କଟକରୁ ଗୀତ କି ଦିଲ୍ଲୀରୁ ସମ୍ବାଦ ଯେ ଶୁଣାଯାଏ ତାହା ନୁହେଁ, ପୃଥିବୀର ଯେ କୌଣସି ଜାଗାରୁ କଥା ଗୀତ ଆଦି ରେଡ଼ିଓରେ ଶୁଣାଯିବ ।

ପିଲାମାନେ କହି ଉଠିଲେ—କେଡ଼େ କାବା କଥା ! ଶହ ଶହ ହଜାର ହଜାର କୋଶ ଦୂରରୁ ଏମିତି ଏ ସବୁ ରେଡ଼ିଓରେ ଶୁଣାଯାଇ ପାରିବ ?

ଶିକ୍ଷକ କହିଲେ—ଦେଖ ପିଲାମାନେ, ଏଇ ଯେଉଁ ରେଡ଼ିଓ ଆସେ, ଏତେ କଥା, ଗୀତ, ବକ୍ତୃତା ଆଦି ଶୁଣାଏ, ସେ ଖାଲି ଗୋଟିଏ ଶୁଣାଇବା ଯନ୍ତ୍ର । ଏଇ ରେଡ଼ିଓ ପାଖରେ ରହି ଗୀତ, କଥା ସବୁକୁ ପଠାଇବା ଓ ସାଉଁଟି ନେବା ପାଇଁ ଅଲଗା ଅଲଗା ଯନ୍ତ୍ର ରହିଛି । ଗୀତ, ନାଟ, ବକ୍ତୃତା, ସମ୍ବାଦ ପ୍ରଭୃତି ଭିନ୍ନ ଭିନ୍ନ କେନ୍ଦ୍ରକୁ ପଠାଇବା ଯନ୍ତ୍ର ସାହାଯ୍ୟରେ ଦୂରକୁ ପ୍ରଚାର କରାଯାଏ । କଟକରେ ଏଇଭଳି ଗୋଟିଏ କେନ୍ଦ୍ର ଅଛି । ବାଳକୃଷ୍ଣ ଦାସ ସେଇଠି ଗାଇବା ଯନ୍ତ୍ର ଆଗରେ ଗୀତ ଗାଉଥିଲେ । ଦିଲ୍ଲୀ, କଲିକତା, ବମ୍ବେ, ମାନ୍ଦ୍ରାଜ ପ୍ରଭୃତି ବଡ଼ ବଡ଼ ସହରମାନଙ୍କରେ ଏପରି ରେଡ଼ିଓ କେନ୍ଦ୍ର ଅଛି । ସେ ସବୁ କେନ୍ଦ୍ରରୁ କଥା ଗୀତମାନ ପ୍ରଚାର ହୁଏ । ଆମେ ରେଡ଼ିଓରେ ସେଇସବୁ କେନ୍ଦ୍ର ପାଇଁ ଦିଆଯାଇଥିବା ଚିହ୍ନ ବା ନମ୍ବରରେ ଲଗାଇଲେ ସେଠାରୁ ପ୍ରଚାର ହେଉଥିବା କାର୍ଯ୍ୟକ୍ରମ ଶୁଣିପାରିବା ।

ରବି ବଡ଼ ଚାଲାକ ପିଲା । ସେ କହିଲା—ଗୁରୁଜି ! ଖାଲି ମଉଜରେ ମନଖୁସି କରିବା ପାଇଁ ରେଡ଼ିଓ ସାହାଯ୍ୟ କରୁଚି ନା ତାର କ'ଣ ଉପକାର ରହିଚି ?

ଶିକ୍ଷକ କହିଲେ—ରେଡ଼ିଓରୁ ଆମେ ଖାଲି ଗୀତ ନାଟ ଶୁଣୁନାହୁଁ । ସମ୍ବାଦ, ବକ୍ତୃତା ଆଦି ମଧ୍ୟ ଶୁଣିଥାଉଁ । ରେଡ଼ିଓ ସମ୍ବାଦ ପ୍ରଚାରରୁ ଆମେ ହଜାର ହଜାର ମାଇଲ ଦୂରରେ ଘଟୁଥିବା ନାନା ଦେଶର ଖବର ଜାଣିପାରୁ, କେଉଁଠାରେ କ'ଣ ଦୁର୍ଦ୍ଦଶା ପଡ଼ିଲେ, ଦୁର୍ଘଟଣା ଘଟିଲେ, ସେଇ ଖବର ବିଜୁଳି ବେଗରେ ଚାରିଆଡ଼େ ପ୍ରଚାର ହୋଇଯାଏ । ଲୋକମାନେ ଅନେକ ସଂଖ୍ୟାରେ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି । ଖବର କାଗଜ ଓ ଡାକଦ୍ୱାରା ଏ ସବୁ କାର୍ଯ୍ୟରେ ବହୁତ ବିଳମ୍ବ ଘଟିଥାଏ । ଏହାଦ୍ୱାରା ଦେଶ ଦେଶ, ଅଂଚଳ ଅଂଚଳ ମଧ୍ୟରେ ବନ୍ଧୁତା, ସହଯୋଗ ଓ ସହାନୁଭୂତି ବଢ଼ିବାର ସୁଯୋଗ ମିଳୁଛି ।

ରେଡ଼ିଓର କାର୍ଯ୍ୟ ଖାଲି ଲୋକମାନଙ୍କ ମନରେ ଆନନ୍ଦ ଦେବା ଓ ସେମାନଙ୍କୁ ଖବର ଯୋଗାଇବା ନୁହେଁ, ଏହାଯୋଗୁଁ ସେମାନେ ଅଧିକ ଜ୍ଞାନ ଲାଭ କରିବାରେ ସୁଯୋଗ ପା'ନ୍ତି । ବିଜ୍ଞାନ ରାଜନୀତି, ସମାଜ ନୀତି, ସାହିତ୍ୟ, ଶିକ୍ଷା ପ୍ରଭୃତି ନାନା ବିଷୟ ଉପରେ ବିଦ୍ୱାନ ଓ ପଣ୍ଡିତମାନଙ୍କର ବକ୍ତୃତା ଆଲୋଚନା ରେଡ଼ିଓରୁ ଶୁଣିବାକୁ ମିଳେ । ସେଗୁଡ଼ିକ ଅତି ଶିକ୍ଷଣୀୟ । ତୁମ୍ଭମାନଙ୍କ ପାଇଁ କଟକ ରେଡ଼ିଓ କେନ୍ଦ୍ରରୁ ବିଦ୍ୟାଳୟ କାର୍ଯ୍ୟକ୍ରମ, ଶିଶୁସଂସାର, ଚକା ଚକା ଭଉଁରୀ ଇତ୍ୟାଦି ପ୍ରଚାର ହୋଇଥାଏ । ଏସବୁଥିରୁ ତୁମ୍ଭେମାନେ ଉଭୟ ଜ୍ଞାନ ଆନନ୍ଦ ପାଇ ପାରିବ ।

ରବି ପଚାରିଲା—ଗୁରୁଜି, ଏଭଳି ଭଲ ଯନ୍ତ୍ରଟିକୁ କିଏ କେମିତି ପ୍ରଥମେ ଗଢ଼ି ପାରିଲେ ?

ଶିକ୍ଷକ କହିଲେ—ଭଲ କଥାଟିଏ ପଚାରିଲ । ଏମିତି ସବୁ ପଚାରି ପଢ଼ି ବୁଝି ଯିବା ଭାରି ଭଲ, ଭାରି ଦରକାର । ଏବେ ରେଡ଼ିଓ କିଏ ପ୍ରଥମେ ଗଢ଼ି ପାରିଲେ କହୁଚି ଶୁଣ ।

ପିଲାମାନେ ତୁମେ ଜାଣିଥିବ, ୟୁରୋପ ମହାଦେଶରେ ଇଟାଲି ବୋଲି ଗୋଟିଏ ଦେଶ ଅଛି । ଦେଶର ବୈଜ୍ଞାନିକ ମାର୍କୋନି ଏଇ ରେଡ଼ିଓ ପ୍ରଥମେ ଗଢ଼ିଥିଲେ । ତୁମେ ଦେଖିଥିବ ଗୋଟିଏ ଟେକା ପୋଖରୀର ପାଣିକୁ ଫିଙ୍ଗିଦେଲେ ଚାରିଦିଗରେ ଲହରୀମାନ ଖେଳିଯାଏ । ପୋଖରୀ ପାଣିରେ ଏଇ ସବୁ ଲହରୀ କେତେ ସମୟ ପାଇଁ ରହି ପୁଣି କେଉଁଆଡ଼େ ମିଶିଯାଏ । ଠିକ୍ ସେମିତି ଆମେ କଥା କହିଲେ ଆମର

ଶବ୍ଦମାନ ଅନନ୍ତ ଅସୀମ ବାୟୁମଣ୍ଡଳରେ ଲହରୀମାନ ସୃଷ୍ଟି କରି ଚତୁର୍ଦ୍ଦିଗରେ ଖେଳି-ଯାଏ । ଏହି ଶବ୍ଦର ଲହରୀମାନ ସବୁରି କାନ ଭିତର ପରଦାକୁ ଛୁଇଁଦିଏ । ଫଳରେ ଅନ୍ୟମାନେ ଆମର କଥା ଶୁଣି ପାରନ୍ତି । ମାତ୍ର ପୋଖରୀ ପାଣିର ଲହରୀ ପରି ଶବ୍ଦର ଲହରୀମାନ କିଛି ଦୂର ଆସ୍ତେ ଆସ୍ତେ ଯାଇ ଶେଷରେ ବାୟୁ ମଧ୍ୟରେ ମିଳାଇଯାଏ ।

କିନ୍ତୁ ବୈଜ୍ଞାନିକ ମାର୍କୋନି ଭାବିଲେ ଯେ ବିଜୁଳି ଶକ୍ତି ସାହାଯ୍ୟରେ ଏ ଶବ୍ଦର ଲହରୀଗୁଡ଼ିକୁ ବଳିଷ୍ଠ କରିହେବ । ଏହା ଫଳରେ ଦୂର ସ୍ଥାନକୁ ଶବ୍ଦମାନ ଯାଇପାରିବ ଏବଂ ସମସ୍ତେ ଏହାକୁ ଶୁଣିପାରିବେ । ଏଥିପାଇଁ ଟେଲିଫୋନ୍ ଭଳି କୌଣସି ତାର ଦରକାର ହେବ ନାହିଁ । ରେଡ଼ିଓ ଏମିତି ଏକ ବେତାର ଯନ୍ତ୍ର । ଏ ଦୃଷ୍ଟିରୁ ଦେଖିଲେ ତୁମ ମୋ ଭିତରେ ବି ବେତାରରେ କଥାବାର୍ତ୍ତା ହେଉଛି ବୋଲି କୁହା ଯାଇପାରେ । ପାଖରେ ସିନା କଥାବାର୍ତ୍ତା ବିନା ବେତାର ଯନ୍ତ୍ରରେ ହୋଇପାରୁଛି, କିନ୍ତୁ ଦୂର ସ୍ଥାନ ପାଇଁ ବିଜୁଳି ଶକ୍ତି ଚାଳିତ ଯନ୍ତ୍ର ଲୋଡ଼ାହୁଏ । ମାର୍କୋନି ଏହି ଯନ୍ତ୍ର ପ୍ରଥମେ ବାହାର କରି ଆମର ଧନ୍ୟବାଦର ପାତ୍ର ହୋଇଛନ୍ତି । ତୁମ୍ଭେମାନେ ଆଜିଠାରୁ ସେମିତି ଭଲ ଭଲ କାମ କରିବାକୁ ଚେଷ୍ଟାକର ।

ରବି ପଚାରିଲା—ଗୁରୁଜି ମାର୍କୋନୀ କ'ଣ ପିଲାଦିନୁ ଏଥିପାଇଁ ଚେଷ୍ଟା କରୁଥିଲେ ।

ଶିକ୍ଷକ କହିଲେ – ନିଶ୍ଚୟ । କଥାରେ କହନ୍ତି ମନ ଥିଲେ ବାଟ ଦିଶେ । ଆମ ଭାଗବତରେ ବି ଅଛି "ଏମନ ଭାବୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା ।" ମାର୍କୋନି-ଙ୍କର ମନ ପିଲାଦିନୁ ହୋଇଥିଲା କିପରି ସେ ବଡ଼ ମଣିଷ ହେବେ । ତାଙ୍କର ବାପା ଅବଶ୍ୟ ଶିକ୍ଷିତ ଓ ଧନୀ ଲୋକ ଥିଲେ । ଘରେ ତାଙ୍କର ଥିଲା ଭିନ୍ନ ଭିନ୍ନ ବିଷୟରେ ଅନେକ ବହି । ସେଥି ମଧ୍ୟରେ ବହୁ ବିଜ୍ଞାନ ବହି ଥିଲା । ଏ ସବୁ ବହି ପଢ଼ିବାକୁ ତାଙ୍କର ଭାରି ଝୁଙ୍କ ଥିଲା । ସେ ସବୁ ବୁଝିପାରୁ ନ ଥିଲେ ବି ବହି ପଢ଼ିଯିବାରେ ତାଙ୍କର ଅସୁମାରି ଆନନ୍ଦ ଥିଲା । ଦିନକୁ ଦିନ ତାଙ୍କର ବହିପଢ଼ିବା ପ୍ରତି ଭାରି ଆଦର ବଢ଼ି ଯାଇଥିଲା । ପିଲାଦିନର ଖେଳ କୌତୁକରେ ମଧ୍ୟ ତାଙ୍କର ମନ ନଥିଲା । ବହିଖଣ୍ଡେ ପାଇଲେ ସେ ଭୋକ ଶୋଷ ଭୁଲି ଯାଉଥିଲେ । କିନ୍ତୁ ତୁମେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ଯେ, ସେ ତାଙ୍କ ଜୀବନରେ ଦିନକ ପାଇଁ ହେଲେ କେଉଁ ଦିନ ବିଦ୍ୟାଳୟକୁ ପାଠ ପଢ଼ିବାକୁ ଯାଇ ନ ଥିଲେ । ସେ ନିଜଘରେ ଯାହାସବୁ ପଢ଼ିଥିଲେ । ଏଥିରୁ ତାଙ୍କର ମନର ବଳ ଆଉ ନୂଆ କଥା ଜାଣିବାର ଆଗ୍ରହ କେତେ ବୁଝାପଡ଼ୁଛି ।

ପିଲାଦିନେ ମାର୍କୋନିଙ୍କର କାନ ଦୁଇଟି ତାଙ୍କ ଦେହ ତୁଳନାରେ ଖୁବ୍ ବଡ଼ ଦିଶୁଥିଲା । ଘରର ବୁଢ଼ା ଚାକରଟି ତାକୁ ଦେଖି କହୁଥିଲା—ଆରେ ବାବାରେ ଛୋଟ ବାବୁ କେଡ଼େ କେଡ଼େ କାନ ଦିଟା ପାଇଛନ୍ତି ! କିନ୍ତୁ ସେ ଦିନ କେହି ସ୍ୱପ୍ନରେ ସୁଦ୍ଧା କେବେ ଭାବି ନ ଥିଲେ ଯେ ଏଇ ଲୁଲୁକାନ ଦି'ଟାରେ ଦିନେ ଶହ ଶହ ମାଇଲ ଦୂରରୁ ଭାସି ଆସୁଥିବା କଥାମାନ ଧରିଦେବ ? ବିଜ୍ଞାନର ସବୁ ବିଷୟ ଭିତରେ ବାଳକ ମାର୍କୋନି ବିଜୁଳି ଶକ୍ତିକୁ ଆଲୋଚନା ପରୀକ୍ଷା କରିବାକୁ ସୁଖ ପାଉଥିଲେ । ଏଥିରେ ନୂଆ ନୂଆ କଥା ବାହାର କରିବାରେ ସେ ଦିନ ରାତି ଲାଗି ପଡ଼ୁଥିଲେ ।



[ ମାର୍କୋନି ଘରେ ବସି ବିଜ୍ଞାନ ବହି ପଢ଼ୁଛନ୍ତି ]

ଗୋଟିଏ ବିଜ୍ଞାନ ବହିରେ ସେ ପଢ଼ିଥିଲେ ଯେ ଦରିଆ ଭଳି ନେଳିଆ ଆକାଶରେ ଲହରୀ ଉଠେ । ସେଗୁଡ଼ିକ ହେଉଛି ବିଜୁଳି ଶକ୍ତିର ଲହରୀ । ସାରା ଆକାଶରେ ଏମିତି ଅସୁମାରି ଢେଉ ଉଠି ମୁହୂର୍ତ୍ତିକ ଭିତରେ ଚଉଦିଗକୁ ଖେଳିଯାଏ । ଏଇ ଢେଉ ଉପରେ ଶବ୍ଦମାନ ନିରବରେ ଧାଇଁଥାଏ । ଆଲୁଅ ଖେଳିଯାଏ । ଏଇ କଥା ନିଜେ ଦେଖିବାକୁ ମାର୍କୋନି ଖୁଣ୍ଟା ବରଗଛ କି ଆମ୍ବଗଛ ଉପରେ ଚଢ଼ି ଚୁପ୍‌ଚାପ ହୋଇ ବସୁଥିଲେ । ବହୁ ସମୟ ଯାଏ ସୀମାହୀନ ସୁନୀଳ ଆକାଶକୁ ଚାହିଁ ରହୁଥିଲେ । ଆଖିରେ ପଲକ ପଡ଼ୁ ନ ଥିଲା । ଏଥିରୁ ସେ ଅମାପ ଆନନ୍ଦ ଓ ଆବେଗ ଅନୁଭବ କରୁଥିଲେ । ଏଥିରେ ସେ ଭବିଷ୍ୟତରେ ଜଣେ ବୈଜ୍ଞାନିକ ହେବାର ସ୍ୱପ୍ନ, ସାଧନା ଆଉ ସମ୍ଭାବନା ଲୁଚି ରହିଥିଲା ।

ଥରେ ଥରେ ସେ ଏକ ଲକ୍ଷ୍ୟରେ ଆକାଶକୁ ନିରେଖି କରି ଚାହିଁ ରହୁଥିଲେ । ବିଜୁଳି ଶକ୍ତି, ତାର ଲହରୀ ମାଳା ଆଉ ତାର କରାମତି କଥା ଚିନ୍ତାକରି ସେ କେଉଁ ଅଥଳ ଦରିଆରେ ବୁଡ଼ିଯାନ୍ତି । ଭାବନାର କୂଳ କିନାରା ପାଉନ୍ତି ନାହିଁ । ଖାଇବା ଶୋଇବା ବି ସେ ଭୁଲିଯାଉନ୍ତି । ଦିନେ ସେ ବୈଜ୍ଞାନିକ ହାର୍ଜଙ୍କ ବିଷୟରେ ଗୋଟିଏ ନୂଆ ଲେଖା ଏକ ପତ୍ରିକାରୁ ପଢ଼ିଲେ । ସେଥିରେ ସେ ଗୋଟିଏ ନୂଆ ବିଜୁଳି ଯନ୍ତ୍ର କଥା ଜାଣିବାକୁ ପାଇଲେ । ସେଇ ଯନ୍ତ୍ରରେ ବିଜୁଳି ଲହରୀକୁ ଏମିତି ଭାବରେ ଚଳାଇବାକୁ ହେବ ଯେ ବିନା ତାରରେ ଘରର ଗୋଟିଏ ଜାଗାରୁ ଅନ୍ୟ ଏକ ଜାଗାକୁ ଯାଇ ନିଆଁ ସୃଷ୍ଟି କରି ପାରିବ । ବୈଜ୍ଞାନିକଙ୍କର ନୂଆ କଥା ତରୁଣ ମାର୍କୋନିଙ୍କ ମନରେ ନାହିଁ ନ ଥିବା ଭାବ ଜଗାଇଲା । ମୁଣ୍ଡ ଭିତରେ ତାଙ୍କର କେତେ ଭାବନା ଖେଳିଗଲା । ସେ ଭାବିଲେ ଯଦି ଗୋଟିଏ ଘର ଭିତରେ ବିଜୁଳି ଶକ୍ତି ବିନା ତାରରେ ଏଠାରୁ ସେଠାକୁ ଯାଇ ପାରିଲା ଗୋଟିଏ ଗ୍ରାମରୁ ଆଉ ଗୋଟିଏ ଗ୍ରାମ, ଗୋଟିଏ ଦେଶରୁ ଅନ୍ୟ ଏକ ଦେଶକୁ ଏମିତି ସାରା ଜଗତରେ ଏଇ ଶକ୍ତି କୁହୁକ ପରି କାହିଁକି କ୍ଷଣକ ଭିତରେ ଖେଳି ନ ଯିବ ? ସେ ବଡ କୁତୂହଳୀ ହୋଇ ପଡ଼ିଲେ, ଏଇ ଦିଗରେ ସେ ସଦାବେଳେ ଧ୍ୟାନ ଦେଲେ ।



[ ବିନା ତାରରେ ସମ୍ବାଦ କିପରି ବହୁଦୂରକୁ ପଠାଇହେବ, ମାର୍କୋନି ସବୁବେଳେ ଭାବିବାରେ ଲାଗିଲେ ]

ରବି ବ୍ୟସ୍ତ ହୋଇପଡ଼ି ପଚାରିଲା—ଗୁରୁଜି ! ମାର୍କୋନି ତେବେ କିପରି ଏ ଅସମ୍ଭବ କଥାକୁ ସମ୍ଭବ କଲେ ?

ଶିକ୍ଷକ କହିଲେ—ପିଲାମାନେ, ମନ ଦେଇ ଲାଗିଗଲେ ସବୁକଥା ସମ୍ଭବ ହୋଇପାରିବ । ମାର୍କୋନି ସେଇ ସମୟରୁ ମନ ପ୍ରାଣ ଦେଇ ଚିନ୍ତାକଲେ ବିନା ତାରରେ

ସମ୍ବାଦ ପଠାଇବେ ! ନିଜ ଘରର ତୃତ ମହଲ୍ କୋଠା ଉପରେ ସେ ଏଥିପାଇଁ ନାନା ପରୀକ୍ଷାରେ ଦିନରାତି ବ୍ୟସ୍ତ ରହିଲେ ମାସ ମାସ ବିତିଲା । ସବୁ ପରୀକ୍ଷାରେ ବିଫଳ ହେଲା । ତଥାପି ମାର୍କୋନିଙ୍କ ସାଧନା ଓ ଶକ୍ତି ହଟି ନ ଯାଇ ଆଗେଇଲା ।

କି ଦିନ କି ରାତି ସଦାବେଳେ ଗବେଷଣା ଚାଲିଲା । ମାର୍କୋନିଙ୍କର ଆଖିକୁ ନିଦ ନାହିଁ । ଦେହକୁ ବିଶ୍ରାମ ନାହିଁ, ପେଟକୁ ଭୋକ ନାହିଁ, କି ମନକୁ କ୍ଲାନ୍ତି ନାହିଁ । କ୍ରମେ ମାର୍କୋନି ଦୁର୍ବଳ ହୋଇ ପଡ଼ିଲେ । ଆଖି ଗାଡ଼େ ଗାଡ଼େ ପଶିଗଲା । ବାପା ମା' ତାଙ୍କର ଏ ଅବସ୍ଥା ଦେଖି ଭାରି ଚିନ୍ତିତ ହୋଇ ପଡ଼ିଲେ । ଭାବିଲେ, "ପିଲାଟାର ଏ ପାଗଳାମି କିପରି ଭଲ ହେବ ?"

ଶେଷରେ ଦିନେ ପରୀକ୍ଷା ସଫଳ ହେଲା । ତୃତ ମହଲ୍ କୋଠା ଉପରେ ଥିବା ଗୋଟିଏ ଯନ୍ତ୍ରର ସୁଇଚ୍ ଟିପି ଦେଲା ମାତ୍ରେ ତଳ ମହଲ୍‌ରେ ଥିବା ଗୋଟିଏ ଘଣ୍ଟାରେ ଠଣ୍ ଠଣ୍ ହୋଇ ବାଜି ଉଠିଲା । ବିନା ତାରରେ ବିଜୁଳିର ଏ କରାମତି ଦେଖି ବାପା ମା ସାଇପଡ଼ିଶା କାବା ହୋଇଗଲେ । ଭାବିଲେ ଏ କୁହୁକ ଯନ୍ତ୍ର ନା କାଉଁରୀ କାଠି ! କିନ୍ତୁ ଏହା ହେଲା ସଫଳତାର ପହିଲି ପାହାଚ । ସାଧନା ପଥରେ ଆହୁରି ଆଗେଇବାକୁ ପଡ଼ିଲା ।

ତାପରେ ବେତାର ଯନ୍ତ୍ରର ପରୀକ୍ଷା କୋଠା ଉପରକୁ ଆସି ଘର ଆଗରେ ଥିବା ବଗିଚାରେ ଚାଲିଲା । ଟେଲିଗ୍ରାଫରେ ସଂକେତ କିପରି ଦୂର ସ୍ଥାନକୁ ଯାଇ ପାରିବ, ପରୀକ୍ଷା କରିବାରେ ଲାଗିଲେ । ଏଥିରେ ମଧ୍ୟ ସଫଳ ହେଲେ । ତୃତମହଲ୍ ପକ୍କା ଉପରେ ଥିବା ଯନ୍ତ୍ରର ସୁଇଚ ଟିପି ଦେଲା ମାତ୍ରେ ବଗିଚାରେ ଥିବା ଯନ୍ତ୍ରଟିରୁ ଟିକ୍ ଟିକ୍ ଶବ୍ଦ ଶୁଣାଗଲା । ଉପରୁ ଯେମିତି ସେ ଶବ୍ଦ ପଠା ଯାଇଥିଲା, ତଳେ ଠିକ୍ ସେମିତି ପହଞ୍ଚିଲା । ଏପରି ସେ ଦିନ ଠାରୁ ମାର୍କୋନି ହେଲେ ବେତାର ଟେଲିଗ୍ରାଫର ଜନ୍ମଦାତା ।

ଆଉ କାହାର ବିଶ୍ୱାସ ହେଉ ନ ହେଉ ପୁଅଙ୍କ କାମରେ ବାପାଙ୍କର ପୁରା ବିଶ୍ୱାସ ଆସିଗଲା । ମାର୍କୋନି ପାଗଳ ନୁହନ୍ତି । ସେ ଜଗତରେ ନୂଆ ନୂଆ ଜିନିଷ ମାନ ବାହାରି କରିବାରେ ଲାଗିଛନ୍ତି । ପୁଅ ଯେପରି ତାଙ୍କର ସାଧନା ପଥରେ

ସ୍ୱଚ୍ଛନ୍ଦରେ ଆଗେଇ ପାରିବେ ସେଥିପାଇଁ ଦରକାରୀ ଯନ୍ତ୍ରପାତି କିଣିବା ପାଇଁ ସେ ଯୁଅକୁ ପ୍ରାପ୍ୟ ସାତହଜାର ଟଙ୍କା ପୁରସ୍କାର ଭଳି ଦେଲେ । ମାର୍କୋନିଙ୍କର ପରୀକ୍ଷା କାର୍ଯ୍ୟରେ ଏବେ ସୁବିଧା ହେଲା । ସେ ଉପର ମହଲାର ଗୋଟିଏ ଝରକା ପାଖରେ ଛୋଟ ବେତାର କେନ୍ଦ୍ରଟିଏ ବସାଇଲେ । ସେ ହେଲା ପୃଥିବୀର ପ୍ରଥମ ବେତାର କେନ୍ଦ୍ର । ଏବେ ମଧ୍ୟ ମାର୍କୋନିଙ୍କର ଘର ଏଥିପାଇଁ ସମସ୍ତଙ୍କ ଆଦରର ସ୍ଥାନ ହୋଇଛି ଓ କାଳ କାଳକୁ ସେମିତି ହୋଇ ରହିବ ।

ରବି ପଚାରିଲା—ଗୁରୁଜି ! ମାର୍କୋନିଙ୍କର ସେଇ ବେତାର କେନ୍ଦ୍ର କ'ଣ ଆମ ଆଜିର ବେତାର କେନ୍ଦ୍ରପରି ହୋଇଥିଲା ?

ଶିକ୍ଷକ କହିଲେ—ପ୍ରଥମରୁ ସେ ଯେତେବେଳେ ଏହା ଗଢ଼ିଥିଲେ ସବୁ ଦୃଷ୍ଟିରୁ ଆଜିପରି କିମିତି ହୋଇଥା'ନ୍ତା ? ଏବର ବେତାର କେନ୍ଦ୍ର ଷାଠିଏ ସତୁରୀ ବର୍ଷର ଉନ୍ନତି ପରେ ଏମିତି ହୋଇଛି । ବେତାରରେ ସମ୍ବାଦ ପଠାଯାଇ ପାରିବ, ତାହା ହେଲା ମାର୍କୋନିଙ୍କର ଚିନ୍ତା । ବିଜୁଳି ଶକ୍ତିର ଢେଉ ସାହାଯ୍ୟରେ ସମ୍ବାଦ ପ୍ରଭୃତିକୁ ଦୂର ସ୍ଥାନମାନଙ୍କୁ ସହଜରେ ଆଉ ଅବିକଳ ଭାବରେ ପଠାଇ ହେବ, ଏହା ସେ ଭାବିଲେ । ସେଥି-ପାଇଁ ସେ ତାଙ୍କର ବେତାର ଯନ୍ତ୍ରର ବହୁ ଉନ୍ନତି କଲେ । ମାର୍କୋନି ପ୍ରମାଣ କରି ଦେଖାଇ ଦେଲେ ଯେ ପାଣିରେ ଯେତେ ଜୋରରେ ଢେଉ ଉଠେ, ତାହା ସେତିକି ଦୂରକୁ ଖେଳେଇ ହୋଇଯିବ । ପୋଖରୀରେ ଢେଉ ଉଠିଲା ବେଳେ ଯଦି ଆମେ ହାଲୁକା କାଠ ଖଣ୍ଡେ ଭସାଇ ଦେବା, ତେବେ ଢେଉ ସେଥିରେ ବାଜିବ, ଆଉ ଢେଉର ଜୋରକୁ ଚାହିଁ କାଠ ଖଣ୍ଡିକ ଉଠିବ ପଡ଼ିବ ଓ କୂଳ ଆଡ଼କୁ ହଲି ହଲି ଚାଲିଯିବ । ସେଇପରି ବିଜୁଳି ଯନ୍ତ୍ର ସାହାଯ୍ୟରେ ମହାଶୂନ୍ୟ ବା ଇଥରରେ ଢେଉ ସୃଷ୍ଟି କରାଯାଏ । ସେଇ ଢେଉରେ ସମ୍ବାଦ, ବକ୍ତୃତା, ଗୀତ ଆଦି ଚଉଦିଗକୁ ଭାସିଯାଏ । ଏଇ କାମରେ ପ୍ରେରକ ଯନ୍ତ୍ରର ସାହାଯ୍ୟ ଲୋଡ଼ାଯାଏ । ଆମେ ଘରେ ଗ୍ରାହକ ଯନ୍ତ୍ର ବା ରେଡ଼ିଓ ରଖି ସହଜରେ ଶୁଣିପାରୁ । ଏଇ କଳ ଓ କୌଶଳ ପ୍ରଥମେ ବାହାର କରି ମାର୍କୋନି ଜଗତର ବହୁ ଉପକାର କରିଛନ୍ତି ।

ପିଲାମାନେ ପଚାରିଲେ ନୂଆ କରି ମାର୍କୋନି ଯେତେବେଳେ ଏହା କଲେ ସାରା ଦୁନିଆ ତ ଆଶ୍ଚର୍ଯ୍ୟ ହୋଇଥିବ ଆଉ ତାଙ୍କୁ ଧନ୍ୟ ଧନ୍ୟ କରିଥିବ ?

ଶିକ୍ଷକ କହିଲେ ନିଶ୍ଚୟ । ସବୁ ଭଲ କଥାରେ ପ୍ରଶଂସା ରହିଛି । ଜମା କୋଡ଼ିଏ ବର୍ଷ ବୟସରେ ବୈଜ୍ଞାନିକ ମାର୍କୋନିଙ୍କର ଏପରି ଅପୂର୍ବ ସିଦ୍ଧି ସାରା ସଂସାରକୁ ଚକିତ

କଲା । ଇଂଲଣ୍ଡ, ଆମେରିକା ପ୍ରଭୃତି ଦେଶମାନଙ୍କରୁ ତାଙ୍କ ପାଇଁ ବହୁ ନିମନ୍ତ୍ରଣ ଆସିଲା । ତାଙ୍କର ଯଶ ଓ କୀର୍ତ୍ତିଗାନ ସବୁରି ମୁହଁରେ ଖେଳିଗଲା । ସେ ଯେଉଁଠିକି ଗଲେ ତାଙ୍କୁ ଦେଖିବା ପାଇଁ ଲୋକେ ବହୁ ସଂଖ୍ୟାରେ ରୁଣ୍ଡ ହେଲେ । ତାଙ୍କରି ପ୍ରଶଂସାରେ ସମ୍ବାଦ ପତ୍ର ମାନଙ୍କରେ ପୃଷ୍ଠା ପୃଷ୍ଠା ପୂରିଗଲା । ଜାତି ଧର୍ମ ବର୍ଣ୍ଣର କୌଣସି ଭେଦଭାବ ନ ରଖି ସମସ୍ତେ ମାର୍କୋନିଙ୍କୁ ଉଚ୍ଛ୍ୱସିତ ସମ୍ମାନ ଜଣାଇଲେ ।

ପୃଥିବୀର ଏଇ ଶ୍ରେଷ୍ଠ ବୈଜ୍ଞାନିକ ଯେଉଁଦିନ ଦେହ ତ୍ୟାଗ କଲେ ସେଇପରି ସମୁଦାୟ ସଂସାରରେ ଶୋକର କଳା ଛାଇ ଘୋଟିଗଲା । ସମସ୍ତେ ଦୁଃଖିତ ହେଲେ । ବେତାର ଯନ୍ତ୍ରଗୁଡ଼ିକରୁ ସାରା ଦୁନିଆ ତାଙ୍କର ମୃତ୍ୟୁ ସମ୍ବାଦ କ୍ଷଣକ ଭିତରେ ଜାଣି ଯାଇଥିଲେ । ସେଦିନ ମନେ ହେଲା, ଯେମିତି ବେତାର କେନ୍ଦ୍ରଗୁଡ଼ିକ ଦୁଃଖରେ ଛାତି ଫଟାଇ କାନ୍ଦି ଉଠୁଛି । ପ୍ରକୃତରେ ଯେତେଦିନ ଯାଏ ମଣିଷ ସଭ୍ୟତା ରହିଥିବ ସେତେଦିନ ଯାଏ ମାର୍କୋନି ମରି ସୁଦ୍ଧା ଅମର ହୋଇ ରହିଲେ ।

ରବି କହିଲା—ସତରେ ଆମେ ସମସ୍ତେ ସେଇ ମହାତ୍ମାଙ୍କ ପାଖରେ ସବୁଦିନ ପାଇଁ ଋଣୀ । ଆମେ ପିଲାଏ ମନଦେଇ ପାଠପଢ଼ିବା । ନୂଆ ନୂଆ କଥା ଜାଣିବା ନୂଆ ନୂଆ ଜିନିଷ ଗଢ଼ିବା । ବଡ଼ ମଣିଷ ହେବା । ଜଗତର ମଙ୍ଗଳ କରି ଧନ୍ୟ ହେବା ।

ଏହା ଶୁଣି ଶିକ୍ଷକଙ୍କ ମୁହଁରେ ଆନନ୍ଦର ଆଲୁଅ ଖେଳିଗଲା ।

—※—